ଅନନ୍ୟ କାନ୍ତକବି : ପ୍ରବନ୍ଧ ସଂକଳନ
ପ୍ରାବନ୍ଧିକ : ଡକ୍ଟର ସର୍ବେଶ୍ୱର ସେଣ
ଠିକଣା - ସା/ପୋ- ପୁରୁଷୋତ୍ତମପୁର, ଭାୟା- କରିଲୋପାଟଣା, କେନ୍ଦ୍ରାପଡା - ୭୫୪୨୨୩
ଦୂରଭାଷ : ୯୪୩୭୦୮୮୦୩୯, Email : drssena@gmail.com
ପ୍ରକାଶକ : ଅରୁଣ ପ୍ରସାଦ କାନୁନ୍‌ଗୋ
'ଉପାସନା'- ୨୫୬୦, ବି. କେଦାରଗୌରୀ ବିହାର, ଭୁବନେଶ୍ୱର-୧୪
ଦୂରଭାଷ: ୯୯୩୭୫୮୨୧୩୪, Email : arunpkanungo@gmail.com
ମୁଦ୍ରଣ: ଇଷ୍ଟ କୋଷ୍ଟ ରିବୋକ୍ଲେମ୍ ପ୍ରା.ଲି., ଜଗତପୁର, କଟକ
ଦୂରଭାଷ: ୯୮୬୧୦୫୦୯୭୧
ପ୍ରଥମ ପ୍ରକାଶ: ୯ ଡିସେମ୍ବର ୨୦୧୫
ମୂଲ୍ୟ : ଟ ୧୨୦ ଙ୍କା

**ANANYA KANTAKABI**
By Dr. Sarbeswar Sena
Address : At/Po- Purusottampur, Via- Karilopatana,
Dist- Kendrapara-754223
Mob.: 9437088039, E-mail : drssena@gmail.com
Publisher: Arun Prasad Kanungo
'Upasana'-2560, B. Kedargouri Vihar, Bhubaneswar-14
Mob.: 9937582134, E-mail : arunpkanungo@gmail.com
Printed at: East Coast Reboclaim Pvt. Ltd .
Jagatpur, Cuttack, Phone No.: 9861050971
First Edition: 9th Dec. 2015
Price: Rs. 120/-



## କାନ୍ତକବି ଲକ୍ଷ୍ମୀକାନ୍ତ

ଆବିର୍ଭାବ: ଡିସେମ୍ବର ୯, ୧୮୮୮ ତିରୋଧାନ: ଫେବୃୟାରୀ ୨୪, ୧୯୫୩

# ପ୍ରକାଶକୀୟ ସ୍ୱୀକାରୋକ୍ତି

ପ୍ରଫେସର ଡକ୍ଟର ସର୍ବେଶ୍ୱର ସେଣ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟ ସମାଲୋଚକ । ସେ ମଧ୍ୟ ମୋର ଶିକ୍ଷାଗୁରୁ । ମୋ' ପରି ଏକ ଅକିଂଚନ ଲେଖକ ଓ ସାମ୍ବାଦିକ ଉପରେ ସେ ନୂତନ ଭାବେ ରଚନା କରିଥିବା 'ଅନନ୍ୟ କାନ୍ତକବି' ପ୍ରକାଶନର ଦାୟିତ୍ୱ ନ୍ୟସ୍ତ କରିଥିବାରୁ ମୁଁ ଗର୍ବିତ । ସେହିପରି ଗୁରୁମା' ସ୍ୱନାମଧନ୍ୟା ଶିକ୍ଷୟିତ୍ରୀ ଓ ସୁଲେଖିକା ଶ୍ରୀମତୀ ବିଚକ୍ଷଣା ବିଶ୍ୱାଳଙ୍କ ନିକଟରେ ମଧ୍ୟ ମୁଁ କୃତଜ୍ଞ । ଜଣେ ଆଦର୍ଶବାଦୀ ପ୍ରାଧ୍ୟାପକ, ଅଧ୍ୟକ୍ଷ ତଥା ଛାତ୍ର ବତ୍ସଳ ଶିକ୍ଷକ ଭାବେ ସେ ଓଡ଼ିଶାର ବିଭିନ୍ନ ସ୍ଥାନରେ ବେଶ୍ ପରିଚିତ । ସାହିତ୍ୟ ସାଧନା, ଗବେଷଣା ଜରିଆରେ ସେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତିରେ ବିଶେଷ ସହାୟକ ହୋଇଛନ୍ତି । ଓଡ଼ିଶାର ବିଭିନ୍ନ ସମ୍ବାଦପତ୍ର ଓ ସାହିତ୍ୟ ପତ୍ରିକା ପୃଷ୍ଠାରେ ସାରଙ୍କ ସାହିତ୍ୟ, ସମାଜ ଓ ସଂସ୍କୃତି ସମ୍ବନ୍ଧୀୟ ଲେଖାମାନ ପ୍ରକାଶ ପାଇଛି । ଜଣେ ବିଶିଷ୍ଟ ସ୍ତମ୍ଭକାର ଭାବେ ସେ ଖୁବ୍ ଲୋକପ୍ରିୟ । ମୋର ମନେଅଛି, ମୁଁ ସେତେବେଳେ ସମ୍ମାନ ଶ୍ରେଣୀର ଛାତ୍ର, କେନ୍ଦ୍ରାପଡା ଜିଲ୍ଲା ଅନ୍ତର୍ଗତ ରାମଚଣ୍ଡୀଠାରେ ଆୟୋଜିତ ଏକ ସାହିତ୍ୟ ସଭାରେ ନିତ୍ୟାନନ୍ଦ ମହାପାତ୍ରଙ୍କ ସାହିତ୍ୟ କୃତି ଉପରେ ଚମତ୍କାର ଭାଷଣ ଦେଇ ସେ ସମସ୍ତଙ୍କୁ ଅଭିଭୂତ କରିଦେଇଥିଲେ । ମୋ' ସାର୍ (ଡ. ସେଣ) ଦେଖା ହେଲେ ପଚାରନ୍ତି, ଅରୁଣ ମୋ' ଲେଖା ପଢିଲୁ ? ମତାମତ ଦେବାକୁ ସେ କହନ୍ତି । ଠିକ୍ ମନେ ନାହିଁ , କିଛି ବର୍ଷ ତଳେ ସାର୍ କନିକା ରାଜ ପରିବାର ଉପରେ ଏକ ସୁନ୍ଦର ପ୍ରବନ୍ଧଟିଏ ପ୍ରକାଶ କରିଥିଲେ । ସେହି ପ୍ରବନ୍ଧଟିକୁ କେନ୍ଦ୍ରାପଡା ଅଂଚଳର ବହୁ ସଚେତନ ପାଠକ ପ୍ରଂଶସା କରିଥିଲେ । ସାରଙ୍କ ବହୁ ଉପାଦେୟ ଲେଖାମାନ ପ୍ରକାଶ ପାଇ ଓଡିଶାର ଗୁଣି ପାଠକମାନଙ୍କୁ ବିହ୍ୱଳ କରିଛି । ଗଦ୍ୟ ରଚନାରେ କାବ୍ୟିକ ଆବେଦନ ଡ. ସେଣଙ୍କ ରଚନାଶୈଳୀର ଏକ ନିଆରାପଣ ।

ପ୍ରକୃତରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ସ୍ଥାନ ଓଡିଆ ସାହିତ୍ୟରେ ଅନନ୍ୟ । ଅନେକ ତାଙ୍କ ଉପରେ ଲେଖିଲା ପରେ ବି ସେ ଯେମିତି ଅବହେଳିତ ହୋଇ ରହିଯାଇଛନ୍ତି ! ସେହି ପ୍ରଚଣ୍ଡ ପ୍ରତିଭାଙ୍କ ସୃଷ୍ଟି ଉପରେ ଏକ ନିଆରା ଢଙ୍ଗରେ ସାର୍ ଯେପରି ମୂଲ୍ୟାୟନ କରିଛନ୍ତି, ତାହା ପାଠକମାନଙ୍କ ହୃଦୟକୁ ସ୍ପର୍ଶ କରିବ । ବହୁ ଗବେଷକ ଓ ସମାଲୋଚକ ଏ ପୁସ୍ତକରୁ ପ୍ରେରଣା ମଧ୍ୟ ପାଇପାରିବେ । କାନ୍ତକବିଙ୍କ ଦୁଇ ସୁପୁତ୍ର – ସ୍ୱର୍ଗୀୟ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ ଗୌରଚନ୍ଦ୍ର ମହାପାତ୍ର (ଉଭୟ ମୁକ୍ତି ସଂଗ୍ରାମୀ ଓ ପ୍ରତିଷ୍ଠିତ ସାହିତ୍ୟିକ) ଙ୍କ ଉପରେ ସାର୍ ଉଭୟ ଇଂରାଜୀ ଓ ଓଡିଆ ଭାଷାରେ ବହୁ ଆଲୋଚନା ପ୍ରକାଶ କରିଛନ୍ତି । ତାହା ମଧ୍ୟ ପାଠକମାନଙ୍କୁ ସ୍ପର୍ଶ କରିଛି ।

କାନ୍ତକବିଙ୍କ ସାହିତ୍ୟ କୃତି ବାସ୍ତବିକ ଅନନ୍ୟ । ସାର୍ ମଧ୍ୟ ଏକ ଆକର୍ଷଣୀୟ ଢଙ୍ଗରେ ତାଙ୍କର ଅମର କୃତି 'କଣାମାମୁଁ,' 'ବୁଢା ଶଙ୍ଖାରି' , 'ଅସହଯୋଗୀର ଆତ୍ମକଥା', 'ଜୀବନ ସଂଗୀତ' ଓ ଆଉ କେତେକ ମନଛୁଆଁ ଲେଖା ଉପରେ ଆଲୋକପାତ କରିଛନ୍ତି 'ଅନନ୍ୟ କାନ୍ତକବି' ପୁସ୍ତକରେ । ପୁସ୍ତକଟି ପାଠକ ମହଲରେ ନିଶ୍ଚୟ ଆଦୃତ ହେବ – ଏ ଦୃଢ଼ ବିଶ୍ୱାସ ରହିଛି ।

ଅରୁଣ ପ୍ରସାଦ କାନୁନ୍‌ଗୋ
ବରିଷ୍ଠ ସହ ସଂପାଦକ, ଧରିତ୍ରୀ
(ପ୍ରକାଶକ)

ତା ୦୯.୧୨.୨୦୧୫
କାନ୍ତ ଜୟନ୍ତୀ

# ଲେଖକୀୟ ମୁଖବନ୍ଧ

ସାରସ୍ୱତ ସାଧକ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର (୧୮୮୮-୧୯୫୩) । ତାଙ୍କ ସ୍ୱର୍ଣ୍ଣାକ୍ଷର ଦିବସ ୧୮୮୮ ମସିହା ଡିସେମ୍ବର ୯ ତାରିଖ ( ଓଡ଼ିଆ ମାର୍ଗଶିର ମାସ, ମାଣବସା ଗୁରୁବାର) । କଟକ ସହର ଅନ୍ତର୍ଗତ ବକ୍ସିବାଜାରର ଧୂଆଁପତରିଆ ଗଳିର ଏକ ଭଡା ଘର ଥିଲା ତାଙ୍କ ଅନ୍ତୁଡିଶାଳ । ଲକ୍ଷ୍ମୀକାନ୍ତଙ୍କ ପିତା ଭଦ୍ରକ ତାଳପଦା ଜମିଦାର ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର , ମାତା ଶ୍ରୀମତୀ ରାଧାମଣୀ ଦାସୀ । ତାଙ୍କ ଡାକ ନାଁ ଲକ୍ଷୀ । ଲକ୍ଷ୍ମୀକାନ୍ତ ଥିଲେ ରୂପ ଯୌବନ ସଂପନ୍ନ ବିଶାଳ କୁଳ ସମ୍ଭବା ; ଉଚ୍ଚଶିକ୍ଷିତ ମଧ୍ୟ । ଛାତ୍ର ଜୀବନରୁ ସେ କବିତା, ନାଟକ ମାନ ରଚନା କରିଥିଲେ । ସେବେଳା ଓଡ଼ିଶାର ଦୁଇଟି ପ୍ରସିଦ୍ଧ ସାହିତ୍ୟ ପତ୍ରିକା- 'ମୁକୁର', 'ଉତ୍କଳ ସାହିତ୍ୟ'ରେ ତାଙ୍କ ଲେଖାମାନ ପ୍ରକାଶ ପାଇଲା । ସେ ଗୁଡିକ ବହୁ ଲବ୍ଧପ୍ରତିଷ୍ଠ ସାହିତ୍ୟିକଙ୍କର ଆଦର ଲାଭ କଲା । ସେମାନଙ୍କ ମଧ୍ୟରେ ବ୍ୟାସକବି ଫକୀର ମୋହନ ସେନାପତି ଥିଲେ ଅଗ୍ରଗଣ୍ୟ । ଅଧିକରୁ ଅଧିକ ଲେଖିବା ପାଇଁ ସେ ଲକ୍ଷ୍ମୀକାନ୍ତଙ୍କୁ ପ୍ରେରଣା ଦେଇଥିଲେ । ସେଇ କଥାକୁ ଲକ୍ଷ୍ମୀକାନ୍ତ ଲେଖିଛନ୍ତି, " ଫକୀର ମୋହନଙ୍କ ଆଶୀର୍ବାଦ ମୋ ଲେଖକ ଜୀବନ ଉପରେ ଏଭଳି ପ୍ରଭାବ ପକାଇଦେଲା ଯେ, ତାହା ଅଲିଭା ହୋଇ ରହିଯାଇଛି ମୋ ଶିରା ପ୍ରଶିରାରେ । ମୋର ଗୋଟାଏ ଲେଖା ଦେଖି ମୋତେ କୁଣ୍ଢାଇ ପକାଇ କହିଲେ- ତୋ' ଲେଖାରେ ଫୁଲ ଚନ୍ଦନ ପଡୁ - ଥକିବୁ ନାହିଁ ବାପା- ଭଲ ମନ୍ଦର ବିଚାର କରିବୁ ନାହିଁ - ତୁ ଲେଖିଯିବୁ । ସେ ବିଚାର କାଳ କରିବ ।'' ଓଡିଆ ସାହିତ୍ୟର ମଉଡମଣି ଫକୀର ମୋହନଙ୍କ ଭବିଷ୍ୟତ ବାଣୀ ସତ୍ୟ ହେଲା । ଦୁରାରୋଗ୍ୟ ବ୍ୟାଧି ସତ୍ୱେ; ଫକୀର ମୋହନଙ୍କ ପରେ ସେ ହେଲେ ଆଧୁନିକ ଓଡିଆ ସାହିତ୍ୟର ମାର୍ଗଦର୍ଶକ ।

ପ୍ରତ୍ୟେକ କବି କଳାକାରଙ୍କ ସଫଳତା ପଛରେ ଥାଆନ୍ତି ନାରୀଟିଏ । ସେହିପରି ଲକ୍ଷ୍ମୀକାନ୍ତଙ୍କ କୃତିତ୍ୱ ପଛରେ ଥିଲେ ତାଙ୍କ ଧର୍ମପତ୍ନୀ ଲବଙ୍ଗଲତା ଦେବୀ । ଲବଙ୍ଗଲତାଙ୍କୁ ଲକ୍ଷ୍ମୀକାନ୍ତ ବହୁତ ଭଲପାଉଥିଲେ । କୌଣସି କାରଣରୁ ଉଭୟଙ୍କ ମଧ୍ୟରେ ବିବାହ ସଂପନ୍ନ ହେବାର ସମ୍ଭାବନା କ୍ଷୀଣ ହେଲା । କାନ୍ତକବି ଦୁଃଖରେ ଭାଙ୍ଗିପଡିଲେ; ମାତ୍ର ଫକୀର ମୋହନଙ୍କ ମଧ୍ୟସ୍ଥତାରେ ଲକ୍ଷ୍ମୀକାନ୍ତ , ଲବଙ୍ଗଲତାଙ୍କ ପ୍ରଣୟ ପରିଣୟରେ ପରିଣତ ହେଲା । ଏହା ଥିଲା ବିଧି ନିର୍ଦ୍ଦିଷ୍ଟ । ଲବଙ୍ଗଲତା ଲକ୍ଷ୍ମୀକାନ୍ତଙ୍କ ଜୀବନ ପରିଧିକି ଆସି ନଥିଲେ ହୁଏତ ସେ 'କାନ୍ତକବି' ହୋଇପାରି ନଥାନ୍ତେ ।

ସାହିତ୍ୟ କ୍ଷେତ୍ରରେ, ବିଶେଷ କରି ଉତ୍କଳମଣି ଗୋପବନ୍ଧୁ ଦାସ, ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଠାରୁ ପ୍ରେରଣା ଲାଭ କରି ରୋଗ କବଳିତ କାନ୍ତକବି ଆମ ସାହିତ୍ୟର ପ୍ରାୟ ସକଳ ବିଭାଗରେ ଲେଖନୀ ଚାଳନା କରି ଅତ୍ୟନ୍ତ ସଫଳ ହେବା ଆଶ୍ଚର୍ଯ୍ୟର କଥା । କାବ୍ୟ କବିତା, ସଂଗୀତ, ନାଟକ; ଏପରିକି ଅନୁବାଦ ସାହିତ୍ୟରେ ସେ କରିଯାଇଛନ୍ତି ଅଜସ୍ର ରଚନା । ତାଙ୍କର ରଚନା ସମଗ୍ର 'କାନ୍ତ ସାହିତ୍ୟ ମାଳା ' (ପ୍ରଥମ, ଦ୍ୱିତୀୟ ଖଣ୍ଡ ) ରେ ସୀମିତ ରହିଥିଲେ ହେଁ, ତାଙ୍କର ଆହୁରି ଅନେକ ଭଜନ , ଜଣାଣ ପ୍ରଭୃତି ଅପ୍ରକାଶିତ । ତାଙ୍କ ଦ୍ୱାରା ଅନୂଦିତ ' ଓମାର ଖୟାମ ' ମଧ୍ୟ ପ୍ରକାଶ ପାଇ ନାହିଁ । ତାଙ୍କ ରଚିତ ' ଜୀବନ ସଂଗୀତ ' ଏବେ ମଧ୍ୟ

ଦୁଷ୍ପ୍ରାପ୍ୟ; ଅଥଚ ଏଥିରେ ଥିବା ରହସ୍ୟାଚ୍ଛନ୍ନ ସଂଗୀତଗୁଡିକର କରୁଣ ମୂର୍ଚ୍ଛନା ପାଠକକୁ ଅଭିଭୂତ କରିଥିବା ବେଳେ 'ଦୁନ୍ଦୁଭି'ରେ ଥିବା ତାଙ୍କର ଦେଶାତ୍ମବୋଧକ ଜାତୀୟ ସଂଗୀତ ଗୁଡିକ ଆମ ମାନଙ୍କ ମଧ୍ୟରେ ସୃଷ୍ଟି କରେ ଗଭୀର ଉନ୍ମାଦନା ।

ପ୍ରକୃତରେ, ଅସମ୍ପୂର୍ଣ୍ଣ ହେଲେ ହେଁ କାନ୍ତକବିଙ୍କର ଏକ ମାତ୍ର ଉପନ୍ୟାସ 'କଣାମାମୁ', ଅନ୍ୟତମ କ୍ଷୁଦ୍ରଗଳ୍ପ 'ବୁଢ଼ା ଶଙ୍ଖାରି' ଅବା ଆତ୍ମଜୀବନୀ ଶୈଳୀରେ ଲିଖିତ ଶୈଶବ ସ୍ମୃତି, ବାଲ୍ୟ ସ୍ମୃତି, କୈଶୋର ସ୍ୱପ୍ନ, ଯୌବନ ପଥେ ପ୍ରଭୃତି ରଚନାର ବୈଶିଷ୍ଟ୍ୟ ଅଦ୍ୱିତୀୟ । କାନ୍ତ କବିଙ୍କର ବହୁ ଗଦ୍ୟ ରଚନାରେ ପାଠକଟିଏ ପାଇଥାଏ କବିତାର ସ୍ୱାଦ । ଦୂରଦ୍ରଷ୍ଟା ଲକ୍ଷ୍ମୀକାନ୍ତ ଅସହଯୋଗ ଆନ୍ଦୋଳନର କେତେକ ବିଫଳତାକୁ ଲକ୍ଷ୍ୟ କରି ଭାରତର ଭବିଷ୍ୟତକୁ ଆକଳନ କରି ନେଇଥିଲେ । ଆମର ଦୁର୍ଗତି, ବିପତି, ତଥା ଅସହାୟତା ପାଇଁ ଆମେ ହିଁ ଦାୟୀ – ଏ କଥାକୁ ସେ ଦର୍ଶାଇଛନ୍ତି 'ଅସହଯୋଗୀର ଆତ୍ମକଥା' ରେ । ଏ ସବୁର ଯଥାର୍ଥ ମୂଲ୍ୟାୟନ କରିବାକୁ ଏ ପୁସ୍ତକରେ ଉଦ୍ୟମ କରାଯାଇଛି । କାନ୍ତ ସାହିତ୍ୟ ଏତେ ବ୍ୟାପକ ଯେ ତାହାକୁ ସଂପୂର୍ଣ୍ଣ ଭାବେ ଆସ୍ୱାଦନ କରି, ସେଥିରୁ ରସ ସଂଗ୍ରହ କରିବା ପରେ ଯାଇ ସମାଲୋଚନା ଲେଖିବା ପ୍ରକୃତରେ କଷ୍ଟଦାୟକ; ତଥାପି ସେହି ବରପୁତ୍ରଙ୍କ ଆଶୀର୍ବାଦରୁ ଏ ସବୁ ଲେଖା ସମ୍ଭବ ହେଲା । ଏଗୁଡିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ପାଠକୀୟ ଆଦର ମଧ ଲାଭ କଲା । ସାହିତ୍ୟ କଳାର ସବୁ ଦିଗରୁ ବିଚାର କଲେ କାନ୍ତକବିଙ୍କର କୃତି ବାସ୍ତବିକ ଅଦ୍ୱିତୀୟ । ଏଣୁ ଏ ପୁସ୍ତକର ନାମକରଣ 'ଅନନ୍ୟ କାନ୍ତକବି' ରଖାଯାଇଛି । ଶେଷରେ କହି ରଖେଁ, ଦୈନିକ ସମ୍ବାଦପତ୍ର 'ସମ୍ବାଦ କଳିକା' , 'ଶ୍ରୁତି'; ପାକ୍ଷିକ 'କଳିଙ୍ଗ ପ୍ରଭା' , ମାସିକ ସୂର୍ଯ୍ୟପ୍ରଭା ପ୍ରଭୃତିରେ ମୋର ଲେଖା ଗୁଡିକ ପ୍ରକାଶ ପାଇଥିଲା । ଏହି ପୁସ୍ତକର ପ୍ରକାଶନ ଅବସରରେ ସେହିସବୁ ସଂପାଦକ (ଶ୍ରୀ ଜୟାଶୀଷ ରାୟ, ଶ୍ରୀ ସର୍ବେଶ୍ୱର ମିଶ୍ର, ଶ୍ରୀ ପ୍ରଦୀପ୍ତ କୁମାର ଦାସ, ଶ୍ରୀ ବିବେକାନନ୍ଦ ରାୟ)ଙ୍କ ନିକଟରେ ଏ ଲେଖକ କୃତଜ୍ଞତା ଜ୍ଞାପନ କରୁଛି । କାନ୍ତକବିଙ୍କ ଜ୍ୟେଷ୍ଠ ପୌତ୍ର, ସୁପରିଚିତ କବି ଓ ସାମ୍ବାଦିକ ଶ୍ରୀ ଗୁରୁକଲ୍ୟାଣ ମହାପାତ୍ରଙ୍କ ପରାମର୍ଶ ମୋ ପାଇଁ ଅତୀବ ମୂଲ୍ୟବାନ । ମୋ ସହଧର୍ମିଣୀ ଶ୍ରୀମତୀ ବିଚକ୍ଷଣା ବିଶ୍ୱାଳଙ୍କ ପ୍ରେରଣା , ବଡଭାଇ ଶ୍ରୀ ନଟବର ସେଣ, ସାନ ଭାଇ ଶ୍ରୀ ପରମେଶ୍ୱର ସେଣଙ୍କର ସହଯୋଗିତା ସ୍ମରଣୀୟ ହୋଇ ରହିବ । ମୋର ଛାତ୍ର ସାମ୍ବାଦିକ ଓ ସୁଲେଖକ ଶ୍ରୀମାନ ଅରୁଣ ପ୍ରସାଦ କାନୁନଗୋ ଏହି ପୁସ୍ତକ ପ୍ରକାଶନ ପାଇଁ ଦାୟିତ୍ୱ ନେଇଛନ୍ତି ; ସେ ଚିର କଲ୍ୟାଣୀୟ । ମୋ' ଅଗ୍ରଜ ପ୍ରତିମ, ବିଶିଷ୍ଟ ଐତିହାସିକ ତଥା ଅବସରପ୍ରାପ୍ତ ପ୍ରଫେସର, ଭଦ୍ରକ ନିବାସୀ ଡ. ରାଜମୋହନ ମହାପାତ୍ରଙ୍କ ପ୍ରେରଣା ପୁସ୍ତକଟିକୁ ସୂର୍ଯ୍ୟାଲୋକ ଦେଖିବାରେ ସହାୟକ ହୋଇଛି; ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି । ମୁଦ୍ରାକାର ଶ୍ରୀ ବିନୋଦ୍ ଭୂତଙ୍କୁ ମଧ କୃତଜ୍ଞତା ଜଣାଉଛି । ସମସ୍ତ ଚେଷ୍ଟା ସତ୍ତ୍ୱେ; ପୁସ୍ତକଟିରେ ହୁଏତ କିଛି ତ୍ରୁଟି ପରିଲକ୍ଷିତ ହୋଇପାରେ; ଗୁଣି ପାଠକେ ତାହାକୁ ଉଦାରପଣେ ଘେନା କରିବାକୁ ନିବେଦନ ।

ବିନୟାବନତ

ଶାନ୍ତିନଗରୀ

୭ ୦୮ । ୧୨ । ୨୦୦୫

(ଡକ୍ଟର ସର୍ବେଶ୍ୱର ସେଣ)

# ଅନନ୍ୟ କାନ୍ତକବି

## ସୂଚୀପତ୍ର





# 'ବୁଢ଼ା ଶଙ୍ଖାରି'ର କାଳଜୟୀ ସ୍ରଷ୍ଟା

ଡିସେମ୍ବର ୯ ତାରିଖ । କାଳଜୟୀ ସ୍ରଷ୍ଟା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସ୍ୱନକ୍ଷତ୍ର ଦିବସ । ବରଷକୁ ଥରୁଟିଏ ହେଲେ ବି ଓଡ଼ିଆ ଜାତି ସ୍ମରଣ କରୁଛି ଏହି ମହାନ ବାଣୀସାଧକଙ୍କୁ । ସେ ହେଉଛନ୍ତି ଓଡ଼ିଆ ସାହିତ୍ୟ ଜଗତରେ ଅଦ୍ୱିତୀୟ । ଗଦ୍ୟ, କବିତା, ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ହାସ୍ୟରସ, ବ୍ୟଙ୍ଗ, ନାଟକ ଭଳି ସାହିତ୍ୟର ନାନାଦି ବିଭାଗରେ ସେ ଆପଣାର କୀର୍ତ୍ତି ରଖିଯାଇଛନ୍ତି । ବିଶେଷକରି ତାଙ୍କର ସର୍ବଶ୍ରେଷ୍ଠ କୃତି 'ଜୀବନ ସଙ୍ଗୀତ' ପାଇଁ ସେ ସର୍ବଜନ ବିଦିତ । ସ୍ରଷ୍ଟାଙ୍କ 'କଣାମାମୁ' ଉପନ୍ୟାସର ଜାତୀୟତାବାଦୀ ଭାବ-ଚେତନା ଛୁଇଁଛି କୋଟି ଓଡ଼ିଆ ପ୍ରାଣକୁ । ଠିକ ସେହିପରି ସାରସ୍ୱତ ସୃଷ୍ଟିର ଅନୁପମ ନିଦର୍ଶନ ତାଙ୍କ ଶ୍ରେଷ୍ଠ ଗଳ୍ପ 'ବୁଢ଼ାଶଙ୍ଖାରି' । ତାଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ସଂଗୀତ ବି ଅଦ୍ଭୁତ, ଯାହାକି ରାଜ୍ୟ ସଂଗୀତର ମାନ୍ୟତା ପାଇଛି । କବିଙ୍କ 'ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡାଇ ବନ୍ଦେ' ସଂଗୀତର ଆବେଦନ ମଧ୍ୟ ଅଦ୍ୱିତୀୟ ।

ଡିସେମ୍ବର ମାସ ୯ ତାରିଖ, ବର୍ଷଟି ଥିଲା ୧୮୮୮ । ସେଦିନ ମାଣବସା ଗୁରୁବାର, ମାର୍ଗଶିର ମାସ । କଟକ ବାଖରବାଦସ୍ଥିତ ଧୂଆଁପତରିଆ ଗଳିରେ ଏକ ଭଡ଼ାଘର; ସେଇଠି ହେଲା ଲକ୍ଷ୍ମୀକାନ୍ତଙ୍କ ଅନ୍ତୁଡ଼ିଶାଳ । ତାଙ୍କ ପିତା ଭଦ୍ରକ ତାଳପଦା ଜମିଦାର ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର; ମାତା ରାଧାମଣି ଦାସୀ, ବୈତରଣୀକୂଳ କଣ୍ଡାପାରି ଜମିଦାରଙ୍କ କନ୍ୟା । ନବଜାତ ଶିଶୁଟିର ନାଁ ଦିଆଗଲା ଲକ୍ଷ୍ମୀକାନ୍ତ । ଲକ୍ଷ୍ମୀ ହିଁ ସୌଭାଗ୍ୟ, ଐଶ୍ୱର୍ଯ୍ୟ ପ୍ରଦାୟିନୀ । ତାଙ୍କରି ବାରରେ ଜନ୍ମ ହେତୁ ପିତାମାତା ଦେଲେ ସେହି ନାଁଟି । ଉତ୍ତର ଜୀବନରେ ଲକ୍ଷ୍ମୀକାନ୍ତଙ୍କର ନଥିଲା ଧନର ଅଭାବ । ସୁଠାମ, ସୁନ୍ଦର, ସୌମ୍ୟକାନ୍ତିଯୁକ୍ତ ଶରୀର । ସେ ସମୟରେ କଟକ ରେଭନ୍‌ସା କଲେଜରୁ ସେ ବି.ଏ. ପାଶ୍ କଲେ । ମନ କିନ୍ତୁ ନାଟକ, ସଙ୍ଗୀତ, ଗଳ୍ପ ଓ କବିତା ରଚନାରେ । ଛାତ୍ର ଜୀବନରେ ଲେଖିଥିବା କବିତାମାନ ବ୍ୟାସକବି ଫକୀରମୋହନ

ସେନାପତିଙ୍କ ପରି ତାଙ୍କ ବାପାଙ୍କ ବନ୍ଧୁମାନଙ୍କୁ ବହୁ ଭାବରେ ସ୍ପର୍ଶ କରିଥିଲା । ସେବେକାର 'ଉତ୍କଳ ସାହିତ୍ୟ', 'ମୁକୁର' ପତ୍ରିକାରେ ତାଙ୍କର ପ୍ରକାଶିତ ଲେଖାମାନ ବହୁ ଗୁଣି ପାଠକଙ୍କୁ ବିମୁଗ୍ଧ କରିଥିଲା । ଏକଦା ସୁସାହିତ୍ୟିକ ହରେକୃଷ୍ଣ ସାମନ୍ତ ବିହ୍ଵଳ ହୋଇ ଆଶୀର୍ବାଦ ବର୍ଷିଲେ, ''ଫୁଲ ଚନ୍ଦନ ପଡୁ ତୋ ଲେଖନୀରେ- ମୁଁ ତୋତେ ଆଶୀର୍ବାଦ କରୁଛି'' - ଏମିତି ଶତ ପ୍ରଶଂସକଙ୍କ ଶୁଭକମନା ଲକ୍ଷ୍ମୀକାନ୍ତଙ୍କୁ ପ୍ରେତ୍ସାହିତ କରିଥିଲା; ମାତ୍ର ଈଶ୍ଵରଙ୍କ କରୁଣା ବିନା କିଏ ବା କାଳଜୟୀ ସ୍ରଷ୍ଟା ହୋଇପାରିଛନ୍ତି ନା ପାରିବେ ? ଦୁଃଖ-ଯନ୍ତ୍ରଣାର କଷଟି ପଥରରେ ବିଶ୍ଵନିୟନ୍ତା ବାରମ୍ବାର ପରୀକ୍ଷା କରିଥିଲେ ଲକ୍ଷ୍ମୀକାନ୍ତଙ୍କୁ । ସେ ପୀଡ଼ିତ ହେଲେ କୁଷ୍ଠ ମହାବ୍ୟାଧିରେ; ଅଙ୍ଗ ବିକଳାଙ୍ଗ ହେଲା । ରୂପ ଲାବଣ୍ୟ ଦେଇ ହରେଇ ନେଲେ ଈଶ୍ଵର । ସତେ ଯେମିତି ସବୁଥିରୁ ବଂଚିତ ହେଲେ ଲକ୍ଷ୍ମୀକାନ୍ତ । ସମ୍ଭବତଃ ଏହା ଥିଲା ଲୀଳାମୟଙ୍କ ମହତ ଆକାଙ୍‌କ୍ଷା । ତାହା ହୋଇ ନଥିଲେ ଓଡ଼ିଆ ବାଣୀ ଭଣ୍ଡାର ଅଧିକ ସମୃଦ୍ଧଶାଳୀ ହୋଇ ନଥାନ୍ତା କି ଏ ଜାତି ପାଇନଥାନ୍ତା 'ଜୀବନ ସଙ୍ଗୀତ', 'ବୁଢ଼ା ଶଙ୍ଖାରି', 'କଣାମାମୁ' ପରି ଅମୂଲ ମୂଲ କଳାକୃତିକୁ ।

କଥା ସାହିତ୍ୟର ମହାର୍ଘ ନିଦର୍ଶନ ବୁଢ଼ାଶଙ୍ଖାରି । ଓଡ଼ିଆ ଗଳ୍ପ ସାହିତ୍ୟର ବୁନିଆଦ ନିର୍ଣ୍ଣୟରେ ସମାଲୋଚକଟି ଏ ଗପଟିକୁ କଦାପି ଉପେକ୍ଷା କରି ନପାରେ । ଜୀବନଧର୍ମୀ, ମାନବିକତାବାଦୀ ସ୍ରଷ୍ଟା ଗୋଟିଏ ସାଧାରଣ ଘଟଣାକୁ ନେଇ ଲେଖିଲେ ବୁଢ଼ାଶଙ୍ଖାରି । ଶଙ୍ଖା ବିକ୍ରିକରୁଥିବା ବୁଢ଼ାଟିଏ, ବାବୁଘର ବୋହୂଙ୍କର ଶଙ୍ଖାକିଣା- ଏହି କଥାକୁ ନେଇ ଗଳ୍ପଟିର ଆରମ୍ଭ, ବିକାଶ ତଥା ପରିଣତି । କ୍ଷୁଦ୍ରଗଳ୍ପର ଆଙ୍ଗିକ, ଆତ୍ମିକ ଶିଳ୍ପ ପ୍ରକରଣକୁ ନେଇ ଗଳ୍ପଟି ସର୍ବାଙ୍ଗ ସୁନ୍ଦର । ଜୀବନର ଖଣ୍ଡିତାଂଶ ଚିତ୍ର, ସାମାଜିକତା, ବାତ୍ସଲ୍ୟ ମମତା, ସର୍ବୋପରି ସେବେକାର ଚଳଣି ସମ୍ପର୍କିତ ମାର୍ଜିତ ରୂପଚିତ୍ର ଗଳ୍ପଟିକୁ କରିଛି ରସୋତୀର୍ଣ୍ଣ ।

ଶଙ୍ଖା, ସିନ୍ଦୂର; ହିନ୍ଦୁ ସମାଜରେ ଅହିଅ ନାରୀର କେବଳ ଆଭୂଷଣ ନୁହେଁ, ତା'ର ଶ୍ରେଷ୍ଠ ସମ୍ପଦ । ସ୍ଵାମୀର ଦେହାନ୍ତ ହେଲେ ଏହାର ଆବଶ୍ୟକତା ଆଉ ନଥାଏ । ଏଣିକି ବୈଧବ୍ୟର ବୋଝ । ଏଇ କଥାକୁ ଲକ୍ଷ୍ମୀକାନ୍ତ ଚମତ୍କାର ଭାବେ ଦେଖାଇ ଦେଇଛନ୍ତି ଗଳ୍ପଟିରେ । ଗଳ୍ପଟିର ଆରମ୍ଭ ବେଶ୍ ନାଟକୀୟ, "ପ୍ରାୟ ଫଗୁଣ ମାସ ଶେଷ ସରିକି, ଉଦୁଉଦିଆ ଖରାବେଳ, ବୁଢ଼ାଟିଏ ଗୋଟିଏ ଗାଁ ମୁଣ୍ଡରେ ଯାଉଥିଲା । XXXX ବୁଢ଼ା ମୁଣ୍ଡରେ ଗୋଟିଏ ଟୋକେଇ, ଧୂଳିରେ ଆଣ୍ଠୁଯାକେ ବୁଡ଼ିଛି, ଅଷ୍ଟାଙ୍ଗ ଶରୀର ଝାଳବୁଡ଼ି ଗୋଡ଼ବାଟେ ବୋହିଯାଉଛି ।'' ଚାଲିଛି ଶଙ୍ଖାରି ବୁଢ଼ା । ସେତେବେଳେ ନଥିଲା ରାସ୍ତାଘାଟ, ଯାନ ବାହନ ବା କାହୁଁ ଆସିବ ? ନିତ୍ୟ ବ୍ୟବହାର୍ଯ୍ୟ ଚିଜମାନ ଏମିତି ଗାଁ ଗାଁକି ବିକ୍ରିବଟା କରାଯାଉଥିଲା । ପୁନେଇଁ ପରବରେ ଗାଁ ସୀମନ୍ତିନୀମାନଙ୍କ

ଲୋଡ଼ା ନୂଆ ଶାଢ଼ୀ, ଚୁଡ଼ି, ଶଙ୍ଖା । ସେମାନେ ନିର୍ଭର କରନ୍ତି ଶଙ୍ଖାରି, ଥଟାରି, ତେଲି, ପାଟରା ମାନଙ୍କ ଉପରେ । ବିଶେଷକରି ଏମାନେ ବାବୁଘର ଦେଖି ପହଞ୍ଚନ୍ତି । ଭଲ ଦି ପଇସା ବି ମିଳେ । ବୃଢ଼ା ଶଙ୍ଖାରି ବସିଛି ବାବୁଘର ପିଣ୍ଡାରେ । ବୋହୂ ସାଆନ୍ତାଣୀ ଶଙ୍ଖା କିଣିବେ । ଏବେକା ପରି ସେ ସମୟରେ ନାରୀ ସ୍ୱାଧୀନତା ନଥିଲା । ମୁଣ୍ଡରେ ଓଢ଼ଣୀ; ଏଗୁଣ୍ଠି ବନ୍ଧ ନ ଟପିବାକୁ କଟକଣା । ବୁଢ଼ା ଉଆସ ଭିତରକୁ ଯାଇଛି । ବାବୁ ଘର, ସଂଭ୍ରାନ୍ତ ବଂଶଙ୍କ ପରି ଖାନ୍‌ଦାନୀ , " ସଦର ଦରଜା ପାରିହେଲେ ଭିତରେ ପକ୍କା ବାହାର, ସାମନାରେ ଚଉପାଢ଼ୀ, ବାଆଁ ପାଖକୁ ଭିତର ଆଡ଼ ଦୁଆର । '' ସେଇଠି ଠିଆ ହୋଇଛନ୍ତି ଲଜ୍ଜାଶୀଳା ଜମିଦାର ବୋହୂଟି । ତାଙ୍କ, ''ମୁହଁଟି ଚକି କାଟିଦେଲା ପରି ଚମ୍ପାଫୁଲ ପରି ଗୋରା । ଘରିଆଙ୍ଗୁଳି ଓସାର ନାଲି ତହଁରି ମୟୂରକଣ୍ଠିଆ କସ୍ତା ଖଣ୍ଡିକ ଗୋଇଠି ଯାଏ ଲମ୍ବିଛି । ତାହାରି ଭିତର ଦେଇ ବୋହୂଟିର କଂଚା ସୁନା ପରି ଗୋରା ଗୋଟିଏ ଘଉଳରେ ଗଢ଼ା ଦେହଟି ଫୁଟି ଦିଶୁଛି''- ଏମିତି ରୂପ ବୁଢ଼ା ଆଗରୁ ଦେଖିନି । ସେ ଆଖି ଫେରୋଇ ପାରିନି । ତା' ପାଟିରୁ କଥା ବାହାରୁନି । ପ୍ରକୃତିସ୍ଥ ହୋଇଛି ବୁଢ଼ା । ବୋହୂ ମା'ଙ୍କ ସୁନ୍ଦରିଆ ହାତରେ ସେ ଶଙ୍ଖା ପିନ୍ଧାଇ ଦେବ । ଚମ୍ପାକଢ଼ିଆ ଆଙ୍ଗୁଳି, ଏତେ ସୁନ୍ଦର; ବୁଢ଼ା ବିମୋହିତ ହୋଇଯାଇଛି । ବୋହୂ ସାଆନ୍ତିଣୀକୁ ଝିଅ ବୋଲି ସମ୍ବୋଧନ କରିଛି, ଦେଖେଇଛି ରଙ୍ଗ ଝିଲିରି, ବଉଳଫୁଲିଆ, ବିଛାମାଳିଆ, ଚୂନପଟି- ଏମିତି ଭଳିକି ଭଳି ଶଙ୍ଖା ; କିନ୍ତୁ ବୋହୂଟିର ପସନ୍ଦ ଆସମାନତାରା ଶଙ୍ଖା । ତଥାପି ବୁଢ଼ା ଆଣିଥିବା ଶଙ୍ଖାରୁ ଦିପଟ ଝିଅ ହାତରେ ପିନ୍ଧାଇ ଦେଇଛି । ବୁଢ଼ାର ଅପତ୍ୟ ସ୍ନେହ ଉଚ୍ଛୁଳି ପଡ଼ିଛି, ''ମା' ମୋତେ ଲାଜ କରୁଛୁ ? ମୁଁ ପରା ତୋ ପୁଅ । ପୁଅକୁ ମା' ଲାଜ କରେ ?'' ଶଙ୍ଖା ପିନ୍ଧାଇ ଦେଇ ବୁଢ଼ା ପାଇଛି ସ୍ୱର୍ଗ ସୁଖ । ତା'ର ସମସ୍ତ ଆଶା ସମସ୍ତ ଖୁସିର ସେହିଠାରେ ତୃପ୍ତି । ସବୁଦିନେ ସେଇ ହାତରେ ଶଙ୍ଖା ପିନ୍ଧାଇବାର ସୁଯୋଗ ମିଳନ୍ତାକି ? ଏମିତି ଆଶା ନେଇ ଦିନେ ଦି ଦିନରେ ଶଙ୍ଖାରି ବୁଢ଼ା ଝିଅ ଗାଁରେ ହାଜର । ଶଙ୍ଖା ତ ଗୋଟେ ନିତି କିଣାବିକା ଜିନିଷ ନୁହେଁ; କିନ୍ତୁ ବୁଢ଼ା ଆସେ । ଝିଅ ସହିତ ଦେଖାହେବ, ତା' ହାତରେ ଶଙ୍ଖା ଦିପଟ ପିନ୍ଧାଇ ଦେବ ! କିନ୍ତୁ ବୋହୂର ଲୋଡ଼ା ସେହି ଆସମାନତାରା ଶଙ୍ଖା । ସମୟ ଗଡ଼ିଚାଲେ । ବୁଢ଼ା ରୋଗ ବାଧିକାରେ ପଡ଼ି ବହୁକଷ୍ଟରେ ଗଢ଼ିଛି ଆସମାନତାରା ଶଙ୍ଖା । ରଜ ସଂକ୍ରାନ୍ତି ଆଉ ଦି ଦିନ ବାକି । ଶଙ୍ଖାରି ବୁଢ଼ା ବଡ଼ ଆବେଗରେ ଯାଇ ପହଞ୍ଚିଲା ଝିଅ ଗାଁରେ । ନିଜ ଆଖିକୁ ବିଶ୍ୱାସ କରିପାରିଲାନି । ବୋହୂ ସାଆନ୍ତାଣୀ ବିଧବା, ଦେହରେ କୁମ୍ଭକିନାରୀ ପାଟଶାଢ଼ୀ ନାହିଁ, ପିନ୍ଧିଛି ଖଣ୍ଡେ ଧଳା ଲୁଗା, ହାତ ଲଙ୍ଗଳା । ବୁଢ଼ା ମୁଣ୍ଡ ଘୂରେଇ ଦେଲା, ଭୋ କରି ସେ ଡକାପାଡ଼ିଲା; ମା'ଲୋ ! ମୁଁ ନମରି କାହିଁକି ତୋତେ ଦେଖିବାକୁ ଆସିଲି ? ଏଇତା ଦେଖିବା ଲାଗି ନା ଲୋ ମା- ବୁଢ଼ାର ବାକ୍ ରୁଦ୍ଧ ହୋଇଗଲା । ଅତି

ସରାଗରେ ଗାମୁଛାରେ ବାନ୍ଧିଥିବା ଶଙ୍ଖାମୁଠାକ ପଟ୍କାରେ କଚାଡ଼ି ଦେଲା । ସବୁ ଭାଙ୍ଗି ଚୂନା ହୋଇଗଲା; ଚୂନା ହେଲା ତା'ର ସ୍ନେହ, ମୋହ ବନ୍ଧନ ଟିକକ । ବୁଢ଼ା ଏକମୁହାଁ ହୋଇ ଚାଲିଲା । ଶାଶୁ, ଦାସୀ ରଡ଼ି କଲେ । ଶେଷ ହେଲା ଗପଟି । ଛୋଟ କଥାଟିଏ; କିନ୍ତୁ ଏହାର ଭାବ ସୁଦୂର ପ୍ରସାରୀ ।

ଶଙ୍ଖା ଦିପଟ ହାତରୁ କଢ଼ାହେଲେ ସୁନାର ଦାମ୍ପତ୍ୟ ଜୀବନ ସରିଯାଏ । ଏଣିକି ଜଣେ ବିଧବାର ନିରିମାଖୀ ଜୀବନ, ହା- ହୁତାଶ ମୟ, ଦଶ ଦିଗ ଶୂନ୍ୟ । ହିନ୍ଦୁ ପରିବାରର ଏହି ପରମ୍ପରାକୁ ଦେଖାଇ ଦେଇଛନ୍ତି ସ୍ରଷ୍ଟା ଏକ କଳାତ୍ମକ ଭଙ୍ଗୀରେ । ଗଳ୍ପଟିର କରୁଣ ରସ ପାଠକକୁ ଅଭିଭୂତ କରେ । ତନ୍ମଧ୍ୟରେ ଥିବା ବାତ୍ସଲ୍ୟ ମମତାର ଅନ୍ତଃପ୍ରବାହୀ ସ୍ରୋତ ବେଶ୍ ପରିସ୍ଫୁଟ । ତାହା ତ ଲକ୍ଷ୍ମୀକାନ୍ତଙ୍କ କଳାକାରିଗରୀର ଅପୂର୍ବ ସଫଳତା ।

ଜୀବନ ଯନ୍ତ୍ରଣାରେ ଆଉଟୁ ପାଉଟୁ ଲେଖକୀୟ ପ୍ରାଣସଞ୍ଚାର ସାର ନିର୍ଯ୍ୟାସଟି ତା'ର ଅନୁପମ ସାହିତ୍ୟ ସର୍ଜନା । ଏଇ କଥାଟିର ସାର୍ଥକତା କେବଳ କାନ୍ତକବି କାହିଁକି, ରୀତିକବି ଦୀନକୃଷ୍ଣ ଦାସ, ଗଣକବି ବୈଷ୍ଣବ ପାଣିଙ୍କ ଠାରେ ପରିଲକ୍ଷିତ । ବିଧାତା ଏମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଅଧୁରା କରିଛନ୍ତି, ପରୋକ୍ଷରେ ଦେଇଛନ୍ତି ଅଶେଷ ଆଶୀଷ । ସବୁ ସୁଖ ହରାଇ ଦେଲାପରେ ପରମ୍ବାହିଁ ଦୁଃଖୀର ଏକମାତ୍ର ସାହା, ଭରସା । ତାହା ହିଁ ଘଟିଛି ଲକ୍ଷ୍ମୀକାନ୍ତଙ୍କ କ୍ଷେତ୍ରରେ । ଜୀବନର ଦୁଃଖ - ଯାତନା- ଗରଳକୁ ସେ ଆକଣ୍ଠ ପାନ କରିଛନ୍ତି, ତାଙ୍କ ଲେଖନୀ ହୋଇଛି ଅମୃତପ୍ରସବା । ସେ ନିଜ ସଂପର୍କରେ କହନ୍ତି , '' ଯେ ପ୍ରକୃତରେ ଚିର ଦୁଃଖୀ, ଚିର ଜର୍ଜର, ଚିର ଆତୁର- ତାହାରି ଅନ୍ତର ନିଭୃତ କକ୍ଷଭେଦି ଯେଉଁ ଉଚ୍ଛ୍ୱାସ, ଯେଉଁ ହା ହା କାର ଉଠେ, ତାହାହିଁ ପ୍ରକୃତ ଗୀତ । x x x x ମୋ ନିଜ କଥା କହିବାକୁ ଗଲେ ମୁଁ ଲେଖେ ନିଜେ ଜୀଇଁବାପାଇଁ । ଏତକ ମୋ ଦୁର୍ବିସହ ଜୀବନର ଏକ ମାତ୍ର ଆଶ୍ୱାସନା, ଏକ ମାତ୍ର ସମ୍ବଳ । ଏହି ଅବଲମ୍ବନଟି ଯେଉଁ ଦିନ ଛିଡିଯିବ, ସେହିଦିନ ଏକା ମୋର ଶେଷଦିନ ।'' ଲକ୍ଷ୍ମୀକାନ୍ତଙ୍କର ଦିନ ସିନା ସରି ଯାଇଛି; ମାତ୍ର ଯଶୋଦେହେ ସେ ଆୟୁଷ୍ମାନ । ଭାରି ଅଭିମାନୀ ଲେଖକ । ଅତି ଆବେଗରେ ଆପଣାର ପ୍ରାଣର ବ୍ୟଥାକୁ ବାଢ଼ିଛନ୍ତି ଈଶ୍ୱରଙ୍କ ନିକଟରେ । ତାଙ୍କୁ 'ବାଇଆ ରଜା' ସମ୍ବୋଧନ କରି ଗାଇଛନ୍ତି ଜୀବନ ସଙ୍ଗୀତ ।

ସତରେ ସେଇ ବାଇଆ ରଜାର ଅପୂର୍ବ କରୁଣା । ଦେଲେ ଲକ୍ଷ୍ମୀକାନ୍ତଙ୍କୁ ବୈରାଗ୍ୟ । ସେ ପାଲଟିଲେ ସନ୍ନ୍ୟାସୀ । ସନ୍ନ୍ୟାସୀରୁ ତପସ୍ୟା, ତା'ପରେ ସିଦ୍ଧି । ସିଦ୍ଧ ସାହିତ୍ୟ ସାଧକ, ଦରଦୀ କବି ଲକ୍ଷ୍ମୀକାନ୍ତ । ଆଜିର ଏହି ପୁଣ୍ୟ ଜୟନ୍ତୀରେ ଏ ଜାତିର ତାଙ୍କ ପାଇଁ କୋଟି ପ୍ରଣାମ । ଓଡ଼ିଆଣି ହାତ ଶଙ୍ଖା ଦି'ପଟ କ'ଣ ବୁଢ଼ା ଶଙ୍ଖାରିର କାଳଜୟୀ ସ୍ରଷ୍ଟାଙ୍କୁ ଅମର ରଖିବାକୁ ଯଥେଷ୍ଟ ନୁହେଁ କି ?



# କଣାମାମୁଙ୍କ ସ୍ୱଦେଶ ପ୍ରୀତି

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଲଳିତ-ମଧୁର-କାନ୍ତ-କୋମଳ ପଦାବଳୀର ଅପୂର୍ବ ରୂପକାର, ଅତୀନ୍ଦ୍ରିୟ ଭାବ ଚେତନତାର ସୁଦକ୍ଷ ବିନ୍ଧାଣି, ଜୀବନ ସଂଗୀତର ରଚୟିତା, ଅଦ୍ୱିତୀୟ ଓଡିଆ ଗୀତି କବି । ତାଙ୍କ ଅନୁପମ କବିତା ଚାତୁରୀ ବିମୁଗ୍ଧ କରେ ବିଦଗ୍ଧ- ରସିକ-ପାଠକ- ମନ-ପ୍ରାଣକୁ । ବିଭିନ୍ନ ବିଭାଗରେ ତାଙ୍କ ଲେଖନୀ ଚଳ ଚଞ୍ଚଳ; କିନ୍ତୁ ଜଗତ ତାଙ୍କୁ ଆପଣାର ହୃଦ-ମନ୍ଦିରରେ କାନ୍ତକବି ଭାବେ ସ୍ଥାନ ଦେଇଛି । ଏହି ମହାନ ସ୍ରଷ୍ଟାଙ୍କର ଏକମାତ୍ର ଉପନ୍ୟାସ 'କଣାମାମୁ' । ଅସଂପୂର୍ଣ୍ଣ ହେଲେ ହେଁ ଓଡ଼ିଆ ବାଣୀ ଭଣ୍ଡାରର ଅଦ୍ୱିତୀୟ, ଅକ୍ଷୟ କୀର୍ତ୍ତି । ନିରୁତା ହାସ୍ୟରସ ନୁହେଁ; ବରଂ ଏହା ଜାତି-ଜୀବନର ମର୍ମଲିପି, ମୁକ୍ତି ଯୁଦ୍ଧର ସାଂକେତିକ ରୂପଚିତ୍ର । ଗୋଟିଏ ନିଃଶ୍ୱାସରେ ଯେ କେହି ପାଠକ ଏହାକୁ ପଢି ଶେଷ କରିବାର ଲୋଭ ସମ୍ବରଣ କରିପାରେନା । ଏହା ହିଁ ଉପନ୍ୟାସଟିର ପାଠକୀୟ ଆଦୃତି । ନାୟିକା ବିହୀନ ସୃଷ୍ଟି ସମ୍ଭାର 'କଣାମାମୁ' । ଏହାର ନାୟକ କଣାମାମୁ ଗୋଟେ ଗାଉଁଲୀ ହୁର୍ଦ୍ଦୁମା, ହୁଙ୍କାପିଟା, ବେପରୁୟା, ଆଗଚଲା, ହୁଣ୍ଡା, ଗଜ ମୂର୍ଖ; ହେଲେ ମଣିଷ ପରି ମଣିଷ । ସେ ଗୋଟାଏ ଦୁଷ୍ପ୍ରାପ୍ୟ ଆଦର୍ଶ ଯାହା, ସଂପ୍ରତି ଦେଖିବାକୁ ବିରଳ । ଦରଦୀ ବନ୍ଧୁ, ପରୋପକାରୀ, ଦେଶ ଭକ୍ତ, ସ୍ୱାଧୀନତା ସଂଗ୍ରାମର ନେପଥ୍ୟ ନାୟକ କଣାମାମୁ । ତାଙ୍କରି ମାଧ୍ୟମରେ ସ୍ରଷ୍ଟା ଦେଖାଇ ଦେଇଛନ୍ତି ମହାନ ସ୍ୱଦେଶ - ପ୍ରେମ- କଥା-କାହାଣୀକୁ, ପ୍ରଜ୍ୱଳିତ କରିଛନ୍ତି ଜାତି-ପ୍ରେମ-ବହ୍ନି ।

'କଣାମାମୁ'ର ସ୍ୱନକ୍ଷତ୍ରକାଳ ସମ୍ଭବତଃ ୧୯୩୭ ମସିହା । କାନ୍ତକବିଙ୍କ 'ଡଗର' ପ୍ରତିକାରେ ଏହା ଧାରାବାହିକ ଭାବେ ୧୯୪୭ରୁ ପ୍ରକାଶିତ ହୋଇଥିଲା । ଉପନ୍ୟାସଟିର ସୃଷ୍ଟି ସମୟକୁ ଜାତି-ମୁକ୍ତି ଯୁଦ୍ଧ ପରିସମାପ୍ତି ପାଇଁ ଆଉ ମାତ୍ର ଦୁଇଟି ପର୍ବ ଆଗରେ - ବ୍ୟକ୍ତିଗତ-ସତ୍ୟାଗ୍ରହ (୧୯୪୦), ଭାରତଛାଡ଼ ଆନ୍ଦୋଳନ (୧୯୪୨) ।





ସମଗ୍ର ପରିବେଶ ବିଦ୍ୟୁତ ଚଳିତ । ମୁକ୍ତି ସଂଗ୍ରାମରେ ପ୍ରାଣୋତ୍ସର୍ଗ ପାଇଁ ଜାତୀୟତାବାଦୀଙ୍କ ଭୀଷ୍ମପ୍ରତିଜ୍ଞା, ସାତସମୁଦ୍ର ତେର ନଈ ସେପାରିର ଶୋଷକ-ଶାସକ ଇଂରେଜମାନଙ୍କୁ ବିତାଡିତ କରିବା ପାଇଁ ପ୍ରାଣମୂର୍ଚ୍ଛା ସଂଘର୍ଷ । ତାହା ପୁଣି ତ୍ରିମୁଖୀ; ଗାନ୍ଧୀ-ଭାବ-ଭାବିତ ସତ୍ୟାଗ୍ରହୀଙ୍କ ଅହିଂସ-ସଂଗ୍ରାମ, ଚରମପନ୍ଥୀଙ୍କ ହାତ-ହତିଆର-ଗୁଳି-ଗୋଳାରେ ବିଦେଶୀଙ୍କ ସଙ୍ଗେ ଲଢ଼େଇ, ଅନ୍ୟପଟେ ନେତାଜୀଙ୍କ ରକ୍ତ ବିନିମୟରେ ସ୍ୱାଧୀନତା ପ୍ରାପ୍ତିର ଗୁରୁ ଗମ୍ଭୀର ଆହ୍ୱାନ ସହିତ ସଶସ୍ତ୍ର ସଂଗ୍ରାମ ଜାରି । ଉଷ୍ମ-ଜାତୀୟତାବାଦୀ ବାତାବରଣ । କାନ୍ତକବି ସେଇ ମଫସଲି ମାମୁଙ୍କୁ ନେତାଜୀଙ୍କ ଆଜାଦ୍‌ହିନ୍ଦ୍ ଫୌଜର ମହାନାୟକ କରି ଗଢ଼ି ତୋଳିବାର ପ୍ରୟାସ କରିଛନ୍ତି ଉପନ୍ୟାସଟିରେ ।

ସେଦିନ, "ହନୁମାନସିଂହ ସିପେଇ କହୁଥିଲା, ମାମୁ କୁଆଡେ ବୋମ୍ବା ଦଳିଆ । ମହାରାଣୀଙ୍କୁ ତଡିବାକୁ ଯେ ଲାଗିନାହାନ୍ତି, ସେଇ । ଯେତେ ହେଲେ ରାଜା ସିଏ-ଠାକୁର ସମାନ" । କଣା ମାମୁଙ୍କ ଲଢୁଆ ଜୀବନ କଥାଟା ତୁଣ୍ଡରୁ ତୁଣ୍ଡକୁ ପ୍ରସରି ଯାଇଛି । ଗୁପ୍ତ ସଂଗ୍ରାମପାଇଁ ମାମୁଁ କୁଆଡେ ସମ୍ପୂର୍ଣ୍ଣ ପ୍ରସ୍ତୁତ । ସତତ ଜାଗ୍ରତ ।

ସଂଗ୍ରାମ ଏକାକୀ ଚଲାଇ ରଖିଲେ ସଫଳତା ର ସମ୍ଭାବନା କ୍ଷୀଣ । ମୁକ୍ତି ସଂଗ୍ରାମ ପାଇଁ ଏ କଥାଟି ସଂପୂର୍ଣ୍ଣ ପ୍ରଯୋଜ୍ୟ । ଏଥିପାଇଁ ସମ-ମନ-ପ୍ରାଣ-ହୃଦୟ ଥିବା ତ୍ୟାଗୀ ମଣିଷମାନଙ୍କର ସମ୍ମିଳିତ ସଂଗ୍ରାମ ବାଞ୍ଛନୀୟ । ଇତିହାସ ଏହାର ବଳିଷ୍ଠ ଉଦାହରଣ । ଦଳପତି, ଛାମୁଆ ବାହିନୀର ସେନାପତି ଜଣେ ସଦାଚାରୀ, ଜନପ୍ରିୟ, ଅମାୟିକ, ଆକର୍ଷଣୀୟ ବ୍ୟକ୍ତିତ୍ୱ ହେବା ବିଧେୟ । ସେଇ ପରି ମଣିଷଟିଏ କଣାମାମୁ । ବୁଢ଼ାଠାରୁ ପିଲା, ସାଇ ପଡିଶା, ଝିଅ ବୋହୂଙ୍କର ସେ କଣାମାମୁ । କାରଣ, "ସିଏ ତ ଆଉ ବାଟ ଭିକାରି ନୁହେଁ, ଚୋର ଡକାୟତ ନୁହେଁ, କୁଣିଆ ମୈତ୍ର ନୁହେଁ-ସେ ଯେ କଣା ମାମୁ, ବାସ୍ । ତା'ର ଗୋଟାଏ ବଡ଼ ଦୁର୍ବଳତା-ସ୍ୱଦେଶ ପ୍ରୀତି; ସ୍ୱଦେଶ ମାନେ ଆମେ ଆଜିକାଲି ଯେଉଁପରି ବ୍ୟାପକ ଭାବେ ବୁଝୁ, ତାହା ସ୍ୱଦେଶ ନୁହେଁ- ସେ ତା'ର ନିଜଗ୍ରାମ ।" ମାଟି-ମା ପାଇଁ ତାଙ୍କର ଅହେତୁକ ମୋହ, ମମତା, ଆକର୍ଷଣ । ଏହି ପରିପ୍ରେକ୍ଷୀରେ ଔପନ୍ୟାସିକ ଏକ ଅଜଣା, ଅଶୁଣା, ପଲ୍ଲୀ ଗ୍ରାମରେ ମୁକ୍ତି ସଂଗ୍ରାମକୁ ସଂଜୀବିତ କରିବା ପାଇଁ ଚେଷ୍ଟିତ ।

ମହା ସଂଗ୍ରାମର ଦଳପତି କଣା ମାମୁ । ତା'ର ଇୟାର୍ ହେଉଛନ୍ତି ଗାଁ ଗୋଟାଏ । ସେଇମାନଙ୍କୁ ସେ ପିଲାବେଳୁ ମାରି ମାରି, ପିଟି ପିଟି ଗୁଣ୍ଡା କରିଛନ୍ତି । ସମସ୍ତେ ଯେମିତି ହେବେ ଗୋଟେ ଗୋଟେ ନିଦା ମୁଦ୍‌ଗର, ପହିଲମାନ । ଓସ୍ତାଦ୍ ସ୍ୱୟଂ ମାମୁ । ଏଇମାନଙ୍କୁ

ନେଇ ତାଙ୍କର ଆଖଡା, ରଙ୍ଗଶାଳା । ପ୍ରଥମାବସ୍ଥାରେ ଯୁବକମାନଙ୍କୁ ମନେଇବା ପାଇଁ ଚାଲିଲା ସଂଗୀତ ଚର୍ଚ୍ଚା । ଦିନରାତି ତାନା, ନା ନା, ଟୁଂ ଟାଂ , କେଁ କଟର, ଧେଇକି ଧିନ୍ନା, ତବ୍‌ଲା, ହାରମୋନିୟମ୍‌ରେ ସଂଗତ; ନାଟ କୀର୍ତ୍ତନ ନୁହେଁ ଅସଲ ଶାସ୍ତ୍ରୀୟ ସଂଗୀତ ଶିକ୍ଷା । ପହିଲୁ ପହିଲେ ଏପରି ମାମୁଙ୍କ ଯୁବ ବାହିନୀଙ୍କୁ ପ୍ରୋତ୍ସାହନ । ଫୁଲ ରସିଆ ମନଖୁସିଆ, 'ନଦିଆ ନଗରେ ଶଚୀର ଉଦରେ ଜନମ ଗଉର ରାୟ-ସବୁ ବାଜେ-ଭେଲ-ଶିଖିବତ, "କେଲୁଆଡି ଗାଓନା ବାଜାନା'- ବାସ୍ ! ଏମିତି ଚାଲିଲା ସଂଗୀତ ଶିକ୍ଷା । ଶାସ୍ତ୍ରଜ୍ଞାନ ସମ୍ମତ ମଣିଷଟି ହିଁ ରୁଚିସମ୍ପନ୍ନ । କଣାମାମୁ ଏହାର ସାର୍ଥକ ନିଦର୍ଶନ ।

ସଂଗ୍ରାମ ପାଇଁ ଲୋଡ଼ା ଦୁଃସାହସ, ହାତ ହତିଆର କାମତ ଆହୁରି ବିପଦ ସଂକୁଳ । ସେଥିପାଇଁ ଲୋଡ଼ା ହୁକୁମତ, ହାକିମାତି, କ୍ଷମତା, ସାଜ ସରଞ୍ଜାମ । ମାମୁଙ୍କ ଆଖଡ଼ା ଶାଳରେ ଅଷ୍ଟ ବିଦ୍ୟା କୌଶଳ ପ୍ରଶିକ୍ଷଣ- ମୁଦ୍‌ଗର, ବାଡ଼ିଖେଳ, ଛୁରାଖେଳ, ଢାଲ, ତଲବାର ଖେଳ, କୁସ୍ତି, ଦଣ୍ଡ ବୈଠକ, ଧନୁର୍ବିଦ୍ୟା; ଏଥି ସହିତ ଆସନ । ମାତ୍ର ପିଲାଙ୍କ ମନ ତମ୍ବଲ ଖେଳରେ । ସେତେବେଳକୁ ଇଂରାଜୀ ଆଦବ କାଇଦା ଗ୍ରାସରେ ମ୍ଳାନ ସାମାଜିକ ଜୀବନଧାରା । କଣା ମାମୁ ଏ ସବୁକୁ ଘୃଣା କରନ୍ତି । ତାଙ୍କ ମତରେ ତମ୍ବଲ "ସେଇ ଇଂରାଜୀ କସରତ ସବୁପଣି ତମକୁ ମାଇଚିଆ ବନେଇ ଦେଇଛି ।" ଫୁଟ୍‌ବଲ ବଡ କଳିଆ ଖେଳ । ଏଇସବୁ ବିଦେଶୀ ଖେଳରେ ଲାଭଠୁଁ ଲୋକସାନ ଅଧିକ । ଆମ ଦେଶୀ ଖେଳ- ବାଗୁଡି, ଦାଣ୍ଡିଆ, ଡାଳମାଙ୍କୁଡି; ଏଥିରେ ଇଜ୍ଜତ ଅଛି, ସ୍ୱାଭିମାନ ମଧ ଭରପୂର । ଏ ସବୁର ମାମୁ ନିପୁଣ । ସେ ପରା ରାଜବଂଶୀ କ୍ଷେତ୍ରୀୟ, ସାହାସୀ, ଯୋଦ୍ଧା !

ଇଂରେଜ ଶାସନାଧୀନ ଦେଶ । ରାଜା ରାଜୁଡାଙ୍କର ସ୍ଥିତି, ସମ୍ମାନ ଭୂତଳଶାୟୀ । ତଥାପି ରାଜ ଅଂଶୀ,ଟିକାୟତ କଣାମାମୁ । ହୁକୁମ୍, ହାକିମାତି କି ତାଙ୍କରୁ ଯାଇଛି ? ସଂଗ୍ରାମ ପାଇଁ ସଦା ଜାଗତିଆର । ତାଙ୍କ ପିତୃପୁରୁଷ ଲଢ଼ିଛନ୍ତି ଗୋରା ଶାସକଙ୍କ ବିରୋଧରେ । ତାଙ୍କରି ଦାୟାଦ ମାମୁ । କଥା କଥାରେ ତାଙ୍କର ଉଦ୍‌ବୋଧନୀ ମନ୍ତ୍ର, ରକ୍ତ ଉଷ୍ମୁମା ପ୍ରେରଣା ଆଖଡା ପିଲାଙ୍କ ପାଇଁ । ରୁଟି ଡାଲମା ନୁହେଁ ପଖାଳ କଂସା, ଶାଗ ଭଜା; ଏଇତ ଓଡ଼ିଆର ତାକତ । ପୂର୍ବେ ଯେଉଁ ଖଣ୍ଡାୟତ ବୀରମାନେ ଗଂଗାଠାରୁ ଗୋଦାବରୀ ଜୟ କରିଥିଲେ, ସେ କ'ଣ ରୋଟି ଡାଲି ଖାଉଥିଲେ କି ? ଏଇ ପଖାଳ, ଏଇ ପଖାଳ-ଓଡ଼ିଆ ଜାତିର, ମା' ଦୁଧ ଏଇ ।

ପଖାଳଖିଆ ମାମୁ । ତାଙ୍କ ହାତଗୋଡ, ବାହା ରୋଟ ରୋଟ, ଲୁହାପରି ମଜବୁତ୍ । ମସଲ୍, ଫୁଲା ପେଶି ଗୁଡାକ ଲୁହାକୋଡି ଭଳି ଟାଣ । ସେ ଚାହାନ୍ତି ତାଙ୍କ ପରି ମରଦ ପୁଅ, ମାଇଚିଆ ନୁହେଁ । ତାଙ୍କର ଖେଦ; ପିଲାଏ ପହିଲୁ ପହିଲେ ନରମିଗଲେ, ହାଡଭଙ୍ଗା କସରତ୍, ଝାଳ ଜରଜର । ମାମୁଙ୍କ ଆଖିରେ ଏମାନେ ମେଣ୍ଢାପଲ । ତଥାପି ମାମୁ ତାଙ୍କୁ ସଜାଗ କରନ୍ତି, ଆରେ, " ନାଗବଚ୍ଛା ହୋଇ ଜିଆ କୋଚିଆକୁ ବଳିଲ ! ଏତିକି ବେଳେ ତ ଜୀବନର ତେଜ, ଜୀବ ଥାଉଁ ଥାଉଁ ମଲାମଣିଷ ହେଉଛ ଯେ । ତୁମ ଦେଇ ହବ କ'ଣ ?" ଏମିତି କଥା କଥାକେ ଉପଦେଶ, ସଲାମସୁରା । ସାଧନା ନୁହେଁ ଖିଆ ପିଆ ମଜଲିସ୍ ପାଇଁ, ଲୁହାଚଣା ଚୋବାଇ ଚୋବାଇ କ'ଣ ଶେଷରେ ଏଇଯା ହବ- ଏକଥା କହୁଁ କହୁଁ ମାମୁଙ୍କ ଗୋଟାଏ ଆଖିରୁ ଯେଉଁପରି ଅଗ୍ନି ସ୍ଫୁଲିଙ୍ଗ ବାହାରିବାକୁ ଲାଗେ-କାମ ଭସ୍ମବେଳେ ମହାଦେବଙ୍କ ଏକ ଆଖିରୁ ନିଆଁ ବାହାରିଲା ପରି । ସେଇ ତେଜୋଦୀପ୍ତ ଅଗ୍ନି ଶିଖା; ସତେ ଯେମିତି ଇଂରେଜ ମାନଙ୍କୁ ଦିନେ ଜାଳି ପୋଡି ପାଉଁଶ କରିଦେବ !

ନୀତି ଆଦର୍ଶନିଷ୍ଠ ଜୀବନ; ତ୍ୟାଗ, ପରୋପକାର, ସମର୍ପିତ ଭାବ ଭଳି ମହାନ ଗୁଣ ଗୁଡିକ ଜାତୀୟତାବାଦ ଉଦ୍ରେକକାରୀ । ଏସବୁ କଣା ମାମୁଙ୍କ ଠାରେ ଉଣା ନଥିଲା । ତାଙ୍କ ଦୃଷ୍ଟି ପ୍ରଲମ୍ବିତ ନିପଟ ମଫସଲରୁ ଦିଲ୍ଲୀ ଦରବାର ଯାଏ । କିଏ ରୋଗ ବାଧିକାପଡିଲା, ମାମୁ ବଇଦ ଆଣି ହାଜର, ଦଙ୍ଗା ହାଙ୍ଗାମାରେ ସେ ଆଗୁଆ ପଶିଯିବେ, ଜୀବନକୁ ଭ୍ରୂକ୍ଷେପ ନାହିଁ । ଜାନି ଯାତରା, ମେଳା ମଉଛବ, ସର୍କସ ନାଟକ; ମାମୁ ପୂରା ମଜକୁର, ଏକଦମ୍ ଆଗରେ । କୁଲି ଯୋଗାଡ, ବସା ଠିକ୍, ବଜାର ସଉଦା, ଡାକ୍ତରଖାନାରୁ ଦବେଇ ଆଣିବାରେ ଦିନ ରାତି ବ୍ୟସ୍ତ । ବିଦେଶୀ ମୁଷାଫିର ଲୋକ-ଏତିକି ଟିକିଏ ନକଲେ ହଇରାଣ ହେବେ ଯେ ! ରାତିବେଳକୁ ଲୋକ ବସାଇବା, ଗୋଳମାଳ ବନ୍ଦ କରିବା; ପାଣି ଯୋଗା କାମରେ ମାମୁ ସଂପୂର୍ଣ୍ଣ ତତ୍ପର । ଏଇ ତ ଜଣେ ଭଲ ମଣିଷର ମାନବିକତାର ନିଦର୍ଶନ ।

ମାମୁ ଖୁବ୍ ଦୁଃସାହସୀ ! ଗାଁରେ ଡକାଏତ ପଶିଲେ, ପ୍ରଧାନ ଘର ଲୁଟ୍ କଲେ, ତାଙ୍କ ନାତୁଣୀ ଅନୁକୁ ଟେକିନେଲେ । ଭୋଜପୁରୀ ଡକାୟତି ଦଳଙ୍କ ଆଡ୍ଡାରେ ପଶି ମାମୁ ଅନୂଢା କିଶୋରୀ ଅନୁକୁ ଉଦ୍ଧାରକଲେ । ପ୍ରକଟିତ ହେଲା ତାଙ୍କ ମହାନୁଭବତା; ସାହସିକତାର ଚରମ ନିଦର୍ଶନ । ଅନୁକୁ ପଛପିଠିଆ ନାଉକରି ଏକା କୁଦାରେ ବାହାରିଲେ କିଆବୁଦାକୁ ଡେଇଁପଡି । ଖାତିର୍ ନଥିଲା ପିସ୍ତଲ, ଗୁଳିଗୋଳାକୁ ।

ଅନୁକୁ ନେଇ ଗାଁ ସାରା ଚର୍ଚ୍ଚା । ଡକାୟତ ଦଳ "କେଉଁ ପଦାର୍ଥରେ ପ୍ରଥମେ ହାତ ପକାଇଲେ, କେମିତି ବାନ୍ଧି କେଉଁଥିରେ ନେଲେ-ଝିଅଟିକୁ କ'ଣ କଲେ, କେମିତି ଧଇଲେ, ସେ କ'ଣ କହୁଥାଏ । କ'ଣ କରୁଥାଏ" - ଇତ୍ୟାଦି । କିନ୍ତୁ ସଂସ୍କୃତି ସମ୍ପନ୍ନ ମାମୁ ବେହୋସ ଝିଅଟିକୁ ପଛପିଠିଆ ନାଉକରି ଉଦ୍ଧାର କଲେ । ସମ୍ଭ୍ରମର ପାହ୍ନଟିଏ ବି ଉଲଘଂନ ନାହିଁ । ଆଜିକାଲି ଏମିତି ପବିତ୍ର ମଣିଷ କ'ଣ ସତରେ ଅଛନ୍ତି ?

କଣା ମାମୁଙ୍କୁ ନିନାଙ୍ଗୁରିଆ କରିଛନ୍ତି ସ୍ରଷ୍ଟା । ପିଲା ନେଞ୍ଜରା, ପୁଅ ମାଇପ କିଛି ନାହିଁ । ଆଗପଛ ସବୁ ଫାଙ୍କା, ତଥାପି ଅପତ୍ୟ ସ୍ନେହରେ ସେ ବିଭୋର । ଏପଟେ ପୋଲିସ ଖୋଜୁଛି । ସେପଟେ ଅନୁର ବର ଆସିଛି । ମାମୁ ଲୁଚି ଲୁଚି ବରକୁ ଅନ୍ଧାରରେ ଟିକେ ଦେଖୁଛନ୍ତି । ଝିଅର ଚରିତ୍ର ନେଇ ଗାଁଟାଯାକ କେତେ କ'ଣ ଟୁପୁରୁ ଟାପୁର ; ବର ବାହୁଡି ଗଲା, ମଙ୍ଗୁଳା କନିଆଁ- ଏପରି ଆହୁରି ଅନେକ କଥା । ଲାଜ ସରମରେ ପୋଖରୀକୁ ଡେଇଁ ପଡିଲା ଅନୁ । ମାମୁ କିନ୍ତୁ ଜାଗତିଆର, ମଣିଷର ମନସ୍ତତ୍ତ୍ୱ ପଢ଼ିବାରେ ଅତି ଧୁରନ୍ଧର । ଠିକଣା ସମୟରେ ଅନୁକୁ ପୋଖରୀରୁ ଉଦ୍ଧାର କଲେ, ଆଖଡା ଟୋକା ଅଭି ହାତରେ ଛନ୍ଦି ଦେଲେ । ସାମାଜିକ-ଲଜ୍ଜାରୁ ବଞ୍ଚିଗଲା ବିଚରା ନିରପରାଧ ଅନୁ । ଏଇ ତ ମାମୁଙ୍କ ମୁରବି ପଣିଆ, ଦୂରଦୃଷ୍ଟିର ନିଖୁଣ ନିଦର୍ଶନ । ଏ ସମସ୍ତ ଉର୍ଦ୍ଧ୍ୱରେ ମାଟି ମା'କୁ ଶୃଙ୍ଖଳ ମୁକ୍ତ କରିବା ପାଇଁ ମାମୁଙ୍କ ଯୋଜନା ଚିରସ୍ମରଣୀୟ ।

ପ୍ରାକ୍ ସ୍ୱାଧୀନତା କାଳୀନ ପୋଲିସ ମହାପ୍ରତାପୀ, ଜନଜୀବନର ଗଳ ଗ୍ରହ । ତାଙ୍କୁ ଦେଖିଲେ ଗର୍ଭବତୀ ବାଘୁଣୀଟି ବାଟ ଭାଙ୍ଗି ଚାଲିଯାଏ । ଏମାନଙ୍କୁ କି ମାମୁଙ୍କର ଖାତିର ? ସେ ସଂଗ୍ରାମୀ, ଯୋଦ୍ଧା । ଜୀବନକୁ ବାଜିଲଗାଇ ଡକାଏତ କବଳରୁ ଉଦ୍ଧାରକଲେ ଅନୁକୁ, ପୋଲିସର ସାବାସ୍ ଦେବାତ ଦୂରର କଥା, ଓଲଟି ପାଲଟା ଜୁଲମ । ମାମୁ, ତା'ଙ୍କ ଆଖଡା ପିଲାଏ ଡକାୟତ ଦଳ ସହ ସାମିଲ- ଏମିତି ମିଥ୍ୟାରୋପ ସହ ଗାଳିଗୁଲଜ, କେଶ୍ ରୁଜୁ;ଶେଷରେ ଆଖଡା ଶାଳକୁ ବେଆଇନ ଘୋଷଣା କରାଗଲା । ମାମୁ ରୋକ୍‌ଠୋକ୍ ଜବାବ୍ ଦେଲେ ପୁଲିସ ମୁହଁରେ । କହିଲେ, ""ଆମେ କ୍ଷେତ୍ରୀପିଲା, ଜୀବନକୁ ଡର କ'ଣ ଆମର ! ମୋର ପୁଣି କେଉଁ ଲଗା ଅଛି , ମୁଁ କାହାକୁ ଡରିବି ?" ବଜ୍ର ଗମ୍ଭୀର କଣ୍ଠରେ ମାମୁ ଆପଣା ମନକଥାକୁ ଏମିତି କହିଦିଅନ୍ତି । ଗାଁ ଟାଉଟର ପଟ୍ଟନାୟକ । ସେ ଦେଶ-ଜାତି ଦ୍ରୋହୀ, ଦୋମୁହାଁ ଭାରଣ୍ଡ । ଏପଟେ ପୁଲିସ ସହ ସଲାସୁତରା, ସେପଟେ ପାଣି ଛିଞ୍ଚା କଥା । ମନ ନେବାଭଳି କହନ୍ତି, "ମୁଁ ତ ସେଥିପାଇଁ ସେ ମୁନ୍‌ସୀ ବେଧକୁ ତଳିହାତିଆ କରି ଚିକିଣେଇବାରେ ଲାଗିଛି ।" ତା'ର ଚକ୍ରାନ୍ତ ମାମୁଙ୍କୁ ଜଣା । ତା' ପାଲରେ ସେ ବା କାହିଁ ପଡିବେ ?

ନିର୍ଭୀକ, ସତ୍ୟନିଷ୍ଠ କଣାମାମୁ । ଏଇ ଦୁଇଟି ଗୁଣ ସ୍ୱାଧୀନତା ସଂଗ୍ରାମୀର ମୂଳ ଅସ୍ତ୍ର । ସେଦିନ ମାମୁଙ୍କ ମୁନ୍‌ସୀକୁ ସଫା ସଫା, ଠୋ ଠୋଇଆ ଉତ୍ତର- ଖେଳ, କସରତ, କୁସ୍ତି, ଲାଠି, ତଲୁଆର ଖେଳ; ଏସବୁ ପିଲାଙ୍କୁ ସେ ବତାଇ ଦିଅନ୍ତି । ଏଥିରେ ମୁନ୍‌ସୀ ଯୋଡି ଦେଲେ - ଛପର ଡେଇଁବା, ସିନ୍ଧିକରିବା, ରାହାଜାନି, ଦଙ୍ଗା ଫୌଜଦାରୀ, ଚୋରୀ, ଡକାୟତି, ଗୁଣ୍ଡାମି- ଏମିତି ଅନେକ କଟୁ ଶବ୍ଦ । ମାମୁ କୁଆଡେ ବୋମା ଦଳିଆ ! ପିସ୍ତଲ ଚଳାନ୍ତି । ସେ ପୁଲିସ, ସରକାରୀ ଅଫିସରଙ୍କ ହତ୍ୟା, ଚୋରି,ଡକାୟିତିରେ ସାମିଲ । ତାଙ୍କ ଆଖଡ଼ା ଚେଲାମାନେ ମଧ୍ୟ ସେହି ଏକା ରାସ୍ତାରେ । ଏ ଶବ୍ଦଗୁଡିକ ମାମୁଙ୍କ ପାଇଁ ଥିଲା ଅସହ୍ୟ । ସେଥିରେ ପୁଣି ମୁନ୍‌ସୀର ଅଶ୍ଳୀଳ ଇଙ୍ଗିତ, "ଏଇ ଯେଉଁ 'ଶଳା' ଜାତିଟା ଯେମିତି ସତ୍ୟା ନାଶିଆ, ସେମିତି ଘର ପୋଡ଼ିଆ ।" ସରଳ, ସଚ୍ଚୋଟ ମଣିଷ ରାଗିଲେ ବଣର ଜନ୍ତୁ । ସେମିତି ଆମ କଣା ମାମୁ, ଏକା ଖେପାକେ ଆଗକୁ ଝୁଙ୍କି, ମୁନ୍‌ସୀ ବାଁ ଗାଲରେ କସିଦେଲେ ଶକ୍ତ ବ୍ରହ୍ମ ଚାପୁଡ଼ା, ଲୁହା ପାପୁଲି ନିର୍ଘାତରେ ମୁନ୍‌ସୀ ହେଲା ଭୂତଳଶାୟୀ, ଏକବାରେ ସଜ୍ଞାହୀନ । ମାମୁ ନେ ଭାଗତ୍, ପୋଲିସର ଧରଧର୍, ପକୋଡ ପକୋଡ କୁହାଟ । ମାମୁ ଅଦୃଶ୍ୟ, କ୍ଷିପ୍ର ଗତିରେ ଉଭାନ ମୁହୂର୍ତ୍ତିଏରେ । ପୋଲିସ କିଛି ଟେର୍ ପାଇଲାନି ।

ଧନ, ଜନ,ଗୋପ, ଲକ୍ଷ୍ମୀ, କାହିଁ କେଉଁଥିରେ ମାମୁଙ୍କର ଆସକ୍ତି ନାହିଁ । ତାଙ୍କର ଗୋଟିଏ ଚିଜ ପାଇଁ ବଡ଼ ଦୁର୍ବଳତା- ପିସ୍ତଲ । ସେଇଟା ସେ ଭୋଜପୁରୀ ଡାକୁଙ୍କଠାରୁ ଜବତ କରିଥିଲେ । ତାଙ୍କର ତ ହାତ ହତିଆରେ କାମ । ପିସ୍ତଲଟିକୁ କାହିଁକି ବା ମୁନ୍‌ସୀ ଜିମା ଦିଅନ୍ତେ ? କିନ୍ତୁ ମୁନ୍‌ସୀ ସେଇ ପିସ୍ତଲଟିକୁ ପ୍ରଥମେ ଅକ୍ତିଆର କରିନେଇଥିଲେ । ମାମୁ ତାଙ୍କୁ ମାରି ବେହୋସ କରିଦେଇ, ପିସ୍ତଲଟିକୁ ଧରି ଚଲ୍ । ପୋଲିସ ଚିଲ୍ଲାଇଲା- ପିସ୍ତଲ, ପିସ୍ତଲ, ଫାୟାର- ମାମୁଙ୍କର ଖାତିର ନଥିଲା ଏ ପୋଲିସ, ସିପେଇ, ମୁନ୍‌ସୀଙ୍କୁ । ସେ ଦେଶ ସ୍ୱାଧୀନ ପାଇଁ ପିସ୍ତଲ ଚଳଇବେ । ଏଇଟି ତାଙ୍କର ଧ୍ରୁବପ୍ରତିଜ୍ଞା ।

ପରାଧୀନ ଦେଶ । ସତ୍ୟାଗ୍ରହୀ, ସ୍ୱାଧୀନତା ସଂଗ୍ରାମୀଙ୍କୁ ଭୀତତ୍ରସ୍ତ କରିବା ପାଇଁ ପୋଲିସର ନାହିଁ ନଥିବା ଅପକୌଶଳ । ତାଙ୍କ ସହ ସଲାସୁତରା କଲେ ଶିଖୀମନାଇ, ଜାତିଦ୍ରୋହୀ ପଟ୍ଟନାୟକମାନେ । ଏମାନଙ୍କୁ ମାମୁଙ୍କର ବଡ଼ ଘୃଣା । ପୋଲିସ ବିଭିନ୍ନ ସମୟରେ ନିଆଁ ଲଗେଇ ଜାଳି ପୋଡି ଦେଉଥିଲେ ମୁକ୍ତିସଂଗ୍ରାମୀଙ୍କ ସମ୍ପତ୍ତି । ସେମାନଙ୍କ ବଞ୍ଚିବା ଦୁର୍ବିସହ କରିଦେଉଥିଲେ । ମାମୁଙ୍କ ଗାଁର ଟାଉଟର ପଟ୍ଟନାୟକ । ପୋଲିସ

କଥାରେ ବାଇ ହେଲା, ଆଖଡା ଦଳର ଯୁବକ ଅଭିଘରେ ନିଆଁ ଲଗାଇ ଦେଲା । ପଳାତକ ମାମୁ କିନ୍ତୁ ସବୁଦେଖୁଥିଲେ । ସେ କ'ଣ ଭୁଲିପାରିବେ ଗାଁକୁ ନା ଗାଁ ବାଲାଙ୍କୁ ? ହୁତୁ ହୁତୁ ନିଆଁ ଜଳୁଛି । ତା' ଭିତରୁ ଅଭି ଭାଣିଜାଙ୍କୁ ମାମୁ ଉଦ୍ଧାର କଲେ । ନିଜେ ଅଧାପୋଡା, ଗୋଡ଼ହାତ ଫୋଟକା, ଚାଲିବାର ଶକ୍ତି ନାହିଁ । ମାମୁଙ୍କୁ ପୋଲିସ ଆସି ବାନ୍ଧି ନେଲା । ହାତରେ ବେଡ଼ି । ଡାକ୍ତରଙ୍କ ଚିକିତ୍ସାପରେ ମାମୁ ସତେଜ ହେଲେ । ଚାଲିଲା ପୋଲିସର ଇଣ୍ଟରୋଗେସନ, ପିଟି ପିଟି ଫଟାଇ ଦେଲେ ସର୍ବାଙ୍ଗ; ମାମୁ ଦାରୁଭୂତ ମୁରାରି । ପାଟିରୁ ପଦଟିଏ କଥା ପୋଲିସ୍ କାଢ଼ି ପାରିନି ? ଏଣିକି ଜେଲରେ ଚକିପେଶା, ଇଂରେଜ ବିରୋଧୀ ସଂଗ୍ରାମର ପ୍ରତ୍ୟକ୍ଷ ବାଟଟି ବନ୍ଦ । ପୋଲିସ ବି ଆଶ୍ୱସ୍ତ ।

ବିପ୍ଳବୀ ଚାଲିଯାଏ, ବିପ୍ଳବ ମରେନା । ସେ ଦିନ ଗାଁରେ ଫିରିଙ୍ଗି ବିରୋଧୀ ସଂଗ୍ରାମର ମଞ୍ଜିଟି ପୋତିଥିଲେ ମାମୁ । ତାଙ୍କର ଅନୁପସ୍ଥିତିରେ ପଟ୍ଟଶିଷ୍ୟ ଅଭି, କୁଣ୍ଡୁନି ପରି ଶହ ଶହ ଯୁବକ ମୁକ୍ତି ସଂଗ୍ରାମକୁ ଆଗେଇ ନେଲେ । ମାମୁଙ୍କ ଉତ୍ସାହ ବାଣୀ ସେମାନଙ୍କୁ ବିହ୍ୱଳ କରିଥିଲା । ସେ ଅନେକବାର କହନ୍ତି, "ମୁଁ ଚାହେଁ ସଚ୍ଚୋଟ ଜବାନ ଯେ ଜୀବନ ଦେଇ ପାରିବେ ଦେଶ ପାଇଁ, ଦେଶକୁ ସ୍ୱାଧୀନ କରିବା ଯାହାଙ୍କର ହବ ବ୍ରତ-ଧର୍ମ ।"

ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଅହିଂସା ମୁକ୍ତି ଯୁଦ୍ଧ ନିର୍ଣ୍ଣାୟକ ମୋଡ ନେଲା । ଦେଶବାସୀ ମାତିଲେ, ତାତିଲେ । ମାମୁଙ୍କର କିନ୍ତୁ ଅଲଗା ଦର୍ଶନ, ଭିନ୍ନ ମାର୍ଗ । ତାଙ୍କ ପାଖରେ ସଂଖ୍ୟା କମ୍ । ତଥାପି ବନ୍ଧୁକ ମୁନରେ ଗୋରା ଶାସକଙ୍କୁ ତଡିବାକୁ ହେବ । ସେ କହନ୍ତି, "ଅଳ୍ପ କେତେ କ'ଣ ମଣିଷ ନୁହନ୍ତି ? ସଚ୍ଚୋଟ ହୋଇ, ନିସ୍ୱାର୍ଥ ହୋଇ, କର୍ତ୍ତବ୍ୟ କରିବସିଲେ ସଂଖ୍ୟାଲଘୁ ହେବାରେ କିଛି ଯାଏ ଆସ ନାହିଁ ।" ସଶସ୍ତ୍ର ସଂଗ୍ରାମ ମାଧ୍ୟମରେ ଆପଣା ହକ୍ ହାସଲ ପାଇଁ ସେ ଥିଲେ ଦୃଢ ପ୍ରତିଜ୍ଞ । ତାଙ୍କର ଲୋଡା ପୂର୍ଣ୍ଣ ସ୍ୱାଧୀନତା ।

ମାମୁଙ୍କର ମୁଣ୍ଡ ବେଶ୍ ବଡ଼ କାମରେ । କି ହିସାବରେ, କେମିତି କେଉଁଠି ଚାଲିଛି ତାହା ଆଖଡା ଟୋକାଙ୍କୁ ଅଜଣା, ପୁଲିସ ବି ଟେର ପାଇନି ? ବିଦେଶୀ, ବିଧର୍ମୀ ଇଂରେଜମାନଙ୍କୁ ତାଙ୍କର ଭାରି ଘୃଣା, ତାଙ୍କୁ ତଡି ଦେବାକୁହେବ । ପଠେଇ ଦେବାକୁ ହେବ ବିଲାତକୁ । ଏଇଥିପାଇଁ ତ୍ୟାଗୀ, ସନ୍ନ୍ୟାସୀ ଦରକାର, "ସେଇ ସମର୍ପିତ ମଣିଷଟି ଚିତା-ଚୈତନ୍ୟ, ଜଟା ଗେରୁଆ ନୁହେଁ- ଯାହାକୁ କହନ୍ତି ଅସଲ ତ୍ୟାଗୀ । କାମଟା ସହଜ ନୁହେଁ, ଜୀବନ ନେବାକୁ ହେବ, ଆଉ ଜୀବନ ଦେବାକୁ ହେବ ।" ଖୋଜି ଖୋଜି

ମାମୁ ଜାତି ପ୍ରେମୀ ଯୁବକମାନଙ୍କୁ ପାଇଛନ୍ତି । ଏବେ ତାଙ୍କ ଜୀବନ ସାର୍ଥକ । ଏଣିକି ପିଟି ବାଡେଇ, ରକ୍ତନଦୀ ବୁହାଇ ବିଦେଶୀଙ୍କୁ ତଡିବାକୁ ହେବ । ଶେଷରେ ମାମୁ ଖୋଲନ୍ତି ତାଙ୍କ ଗୁପ୍ତମୁଣି, "ଆମ ଗଡରେ ଗୋଟାଏ ପୋଖରୀ ଅଛି । ତା ନାଁ ବେଣ୍ଟ ପୋଖରୀ । ସେ ପୋଖରୀ ଭିତରେ ଅମୁହାଁ ଦେଉଳ, ପାଣିରେ ବୁଡି ରହିଛି । ସେ ଦେଉଳରେ ଗଦା ମରା ହୋଇଛି ବହୁତ ହତିଆର । ସେକଥା ମୋ ଛଡା କାହାରିକୁ ଜଣା ନାହିଁ । ମୁଁ ଲାଗିଛି ତାକୁ ବାହାର କରିବି । ସେତକ ମିଳିଲେ ଏ ଧଳା ସାହବ ଗୁଡାକ ରାଜ୍ୟଛାଡି ପଳାଇବେ । ଆଉ କଳା ସିପେଇତକ କୁକୁର ପରି ଆମରି ପା ତଳେ ଆଉଜିଯିବେ ।" ମାମୁ ଜାଣିଥିଲେ ପୁଲିସ ତାଙ୍କୁ ଧରିବ, ମାରିବ; ଫାଶିହବ । ଏଥିପାଇଁ ଅନୁଶୋଚନା ନଥିଲା । ମାମୁ ସିନା ଜେଲ୍‌ରେ, ତାଙ୍କ ହାତ ତିଆରି ଦେଶପ୍ରେମୀ ଯୁବକମାନେ ଏ ସଂଗ୍ରାମକୁ ପୂର୍ଣ୍ଣ କରିବେ ନିଶ୍ଚୟ । ଏ ବିଶ୍ୱାସ ଥିଲା କଣା ମାମୁଙ୍କର ।

ହଠାତ୍ ଚମକ ପ୍ରଦ ଘଟଣାଟିଏ ଚହଲେଇଦେଲା ପରିବେଶକୁ । ଗାଁ ଗାଁରେ ଆନନ୍ଦର ଜୁଆର- କଣାମାମୁ ଜେଲରୁ ଫେରାର । ସେ ତ ମୁକ୍ତ ପୁରୁଷ, ଉଦାମ, ଅଣାୟତ୍ତ । ଜେଲ୍‌ର ଝରିକାନ୍ଥ ତାଙ୍କୁ କଣ ବାନ୍ଧି ରଖି ପାରିବ ? ମାମୁଙ୍କର ଆଉ ଗାଁ ବାହୁଡା ହୋଇନି, ରହି ଯାଇଛନ୍ତି ପଳାତକ ହୋଇ, ତା' ପର ଠାରୁ ଉପନ୍ୟାସର ଅଗ୍ରଗତି ନାହିଁ, ଅସଂପୂର୍ଣ୍ଣ ରହିଯାଇଛି । ବ୍ରିଟନଙ୍କ କୋପ ଦୃଷ୍ଟିରେ ପଡିଥିଲା ଉପନ୍ୟାସଟି, ଆଉ ଟିକେ ଲେଖକ ଆଗେଇଥିଲେ ଏହା ବାଜ୍ୟାପ୍ତି ହୋଇଥାନ୍ତା । ସମ୍ଭବତଃ ଏଥିପାଇଁ ଦେଶପ୍ରେମୀ ଲକ୍ଷ୍ମୀକାନ୍ତ 'କଣାମାମୁ'କୁ ଅଧା ରଖିଦେଲେ । ଭାରତର ଶେଷ ମୁକ୍ତି ସଂଗ୍ରାମରେ କଣାମାମୁ ମହାନାୟକ ହୋଇ ପାରିଲେନି । ତଥାପି କୋଟି ଜନ-ପ୍ରାଣ-ହୃଦୟର ଦେବତା ସେ । ତାଙ୍କ ସ୍ୱଦେଶ ପ୍ରୀତିର ଇୟତ୍ତା ନାହିଁ; ପଟାନ୍ତର ବା କାହିଁ ?

ଭାରତ ସ୍ୱାଧୀନ, କଣାମାମୁଙ୍କ ସ୍ୱପ୍ନ ସାକାର, ସର୍ବତ୍ର ଉଡୁଛି ତ୍ରିରଙ୍ଗା ଧଣ୍ଡା । ଅଦୃଶ୍ୟରେ ରହି ବେଶ୍ ଖୁସି ହେଉଥିବେ ଆମ କଣାମାମୁ । ବାସ୍ତବିକ ଏକମାତ୍ର ହେଲେ ହେଁ 'କଣାମାମୁ' ଏକ ବିରଳ କୃତିତ୍ୱ, ସ୍ୱଦେଶ ପ୍ରେମର ବଜ୍ର ଘୋଷକ । କଣାମାମୁଙ୍କ ପରି ହଜାର ହଜାର ସ୍ୱାଧୀନତା ସଂଗ୍ରାମୀଙ୍କୁ ଭାରତ ବାସୀଙ୍କ କୋଟି କୋଟି ସଲାମ । ତାଙ୍କର ସଂଗ୍ରାମ, ହାକିମି, ହୁକୁମାତି, ତ୍ୟାଗ, ତିତିକ୍ଷା, ଦେଶ ପ୍ରେମ ଚିର ଉଜ୍ଜ୍ୱଳ ରଖିବ ବହୁ କଷ୍ଟଲବ୍ଧ ସ୍ୱାଧୀନତାକୁ- ଏହା ନିଃସନ୍ଦେହ ।



# ଶୈଶବ ମଧୁର ସ୍ମୃତିଟିଏ

(୧)

ଶୈଶବ, କୈଶୋର, ଯୌବନ, ବାର୍ଦ୍ଧକ୍ୟ- ଏ ସବୁର ମିଶ୍ରଣ ହିଁ ଜୀବନ । ଶୈଶବ କେବଳ ସ୍ମୃତିଟିଏ । ତା' ପଛକୁ ନିବିଡ ନିର୍ଘଣ୍ଟ ଅନ୍ଧାର । ବାର୍ଦ୍ଧକ୍ୟର ଆଗଟା ଭାରି ଅସ୍ପଷ୍ଟ; ଘନ କୁହେଳିକାଛନ୍ନ । ଯୌବନ କର୍ମମୟ, ବାର୍ଦ୍ଧକ୍ୟ ଜୀବନର ଅପରାହ୍ଣ । ଏସବୁ ସ୍ମୃତି ଅନୁଭୂତିର ସାଗ୍ରିକ ରୂପଟି ହିଁ ଜୀବନ ଚରିତ । ତା'ରି ଉପରେ ଆଧାରିତ ଆତ୍ମଜୀବନୀ, ଜୀବନୀ ରଚନାମାନ । ସମାଜର ବିଭିନ୍ନ ବିଭାଗରେ ଉଲ୍ଲେଖନୀୟ କୃତିତ୍ୱ; ଶିକ୍ଷା, ସାହିତ୍ୟ, ସଂସ୍କୃତି, ଜ୍ଞାନବିଜ୍ଞାନ, କ୍ରୀଡା କ୍ଷେତ୍ରରେ ବିଶେଷ ବିଶେଷ ଅବଦାନ ପାଇଁ ଯଶସ୍ୱୀ, କୀର୍ତ୍ତିମାନ ହୋଇଥିବା ବ୍ୟକ୍ତିବିଶେଷଙ୍କୁ ନେଇ ଜୀବନୀ ସଂରଚନା ହୋଇଥାଏ । ନିଜ ଦ୍ୱାରା ରଚିତ ଆତ୍ମକାହାଣୀ ଆତ୍ମଜୀବନୀ । ଜୀବନୀ ହେଉଛି ଜୀବନ ଚରିତ ଯାହା, ଅନ୍ୟମାନଙ୍କ ଦ୍ୱାରା ମଧ୍ୟ ରଚିତ ହୋଇଥାଏ । ଏପ୍ରକାର ସୃଷ୍ଟି ଉତ୍ତର ପିଢ଼ିକୁ ପ୍ରେରଣାଦିଏ, ତ୍ୟାଗପୂତ ଆଦର୍ଶ ଜୀବନ ଯାପନ ପାଇଁ ବାଟ ଦେଖାଏ । ଅନେକ ଜୀବନୀ ସାହିତ୍ୟ ଗୋଟେ ଗୋଟେ ସାମାଜିକ ସନନ୍ଦ, ଐତିହାସିକ ନିର୍ଭୁଲ ଦଲିଲ କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟାସକବି ଫକୀରମୋହନ ସେନାପତି, ଗୋଦାବରୀଶ ମିଶ୍ର, ବୈଷ୍ଣବ ପାଣି, ହରେକୃଷ୍ଣ ମହତାବ;ଫତୁରାନନ୍ଦ, ସେହିପରି ଆହୁରି ଅନେକ ଉତ୍କଳର ବରପୁତ୍ରଙ୍କ ସ୍ୱରଚିତ ଆତ୍ମଜୀବନୀ ଅବା ସେମାନଙ୍କ ଜୀବନ ଚରିତ ସାମଗ୍ରିକ ଭାବେ ଓଡ଼ିଶାର କଳା, ସଂସ୍କୃତି, ସାହିତ୍ୟ, ମୁକ୍ତି ସଂଗ୍ରାମ, ସ୍ୱାଧୀନତା ପରବର୍ତ୍ତୀ ଜନଜୀବନ ଧାରାର ଏକ ଏକ ନିଖୁଣ ପଟ୍ଟଚିତ୍ର । ଏହା ବାଦ ଅନେକ ପ୍ରଥିତଯଶା ଅଛନ୍ତି ଯେଉଁମାନଙ୍କ ଜୀବନୀ ରଚିତ ହୋଇ ନାହିଁ କି ସେମାନେ ଆତ୍ମଜୀବନୀ ରଚନା କରିନାହାନ୍ତି । ସେମାନଙ୍କ ମଧ୍ୟରେ ଲକ୍ଷ୍ମୀକାନ୍ତ ମହାପାତ୍ର ଅନ୍ୟତମ । ସେ ନିଜ ଜୀବନ କଥାକୁ ସମାଜ ଆଗରେ

ବାଢ଼ି ନାହାନ୍ତି; ମାତ୍ର ଏକ ନବୀନ ଶୈଳୀରେ, ପ୍ରତୀକାତ୍ମକ ଢ଼ଙ୍ଗରେ ରଚନା କରିଛନ୍ତି କେତୋଟି ପ୍ରବନ୍ଧ। ଏଗୁଡିକୁ କ୍ରମାନ୍ୱୟରେ ପାଠ କଲେ ଏହା ଯେ ଜୀବନୀ ଭିତ୍ତିକ ରଚନା- ଏ କଥାଟି ଯଥାର୍ଥରେ ହୃଦବୋଧ ହୋଇଥାଏ।

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର (୧୮୮୮-୧୯୫୩), ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱ ତାଙ୍କ ଜୀବନାନୁଭୂତି। କେବେ ହର୍ଷ ଉଲ୍ଲାସ ଆନନ୍ଦ, ଆଉ କେବେ ଦୁଃଖ ଯାତନା ଜର୍ଜରିତ। ଆର୍ଥନୀତିକ ସ୍ୱାଚ୍ଛନ୍ଦ୍ୟ ସତ୍ତ୍ୱେ; ଦୁରାରୋଗ୍ୟ କୁଷ୍ଟବ୍ୟାଧି ତାଙ୍କ ଜୀଇଁବା ଧାରାକୁ କରିଦେଲା ଦୁର୍ବିସହ। ସୌମ୍ୟ କାନ୍ତିଯୁକ୍ତ ସୁଠାମ ଅଙ୍ଗ ପ୍ରତ୍ୟେଙ୍ଗ ହେଲା ବିକଳାଙ୍ଗ। ହାହାକାର ମୟ ଜୀବନ-ଗରଳକୁ ସେ ଆକଣ୍ଠ ପାନ କରିଛନ୍ତି ନୀଳକଣ୍ଠ ପରି। ସ୍ୱାରସ୍ୱତ ସାଧନା ହୋଇଛି ତାଙ୍କ ଜୀବନର ସାଥୀ, ସାରଥି। ଏଣିକି ରାଶି ରାଶି ସାହିତ୍ୟ ସର୍ଜନା। କବିତା, ଗଳ୍ପ, ପ୍ରବନ୍ଧ, ଗୀତି କବିତା, ନାଟକ, ହାସ୍ୟରସ ବ୍ୟଙ୍ଗ, ଉପନ୍ୟାସ ଆଦି ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନାକରି ହେଲେ ଯଶସ୍ୱୀ। 'ଜୀବନ ସଂଗୀତ' କଣାମାମୁ (ଉପନ୍ୟାସ),ବୁଢ଼ାଶଙ୍ଖାରି (ଗଳ୍ପ) ତାଙ୍କୁ ଅମର କରିଛି । ସତରେ ସେ ଅଦ୍ୱିତୀୟ!

ଲକ୍ଷ୍ମୀକାନ୍ତଙ୍କ ଜୀବନୀ ଭିତ୍ତିକ ରଚନା 'ଶୈଶବ ସ୍ମୃତି', 'ବାଲ୍ୟସ୍ମୃତି', 'କୈଶୋର ସ୍ୱପ୍ନ', 'ନବବସନ୍ତର ସମ୍ଭାଷଣ', 'ମଙ୍ଗଳ ମହୁରୀ', 'ନିଭୃତ ନିଶିଥେ' , 'ନବଜାଗରଣ', 'ନିଦାଘେ ଶାଳନ୍ଦୀ', 'ଶ୍ରାବଣେ ଶାଳନ୍ଦୀ', 'ଶରଦେଶାଳନ୍ଦୀ'- ଏଗୁଡିକ ଅତୀବ ଉଚ୍ଚକୋଟୀର। ଏଥିରେ ଲେଖକଙ୍କର ବ୍ୟକ୍ତି ଜୀବନ କାହାଣୀ ବର୍ଣ୍ଣିତ; ତତ୍‌ସହିତ ସାମଗ୍ରିକ ଭାବେ ସ୍ୱାଧୀନତା ପୂର୍ବବର୍ତ୍ତୀ ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡର ସାମାଜିକ ଚିତ୍ର ପାଠକକୁ ଅଭିଭୂତ କରେ। ରଚନା ଶୈଳୀ ମଧ ସଂପୂର୍ଣ୍ଣ ଭିନ୍ନ। ବୈତରଣୀ, ଶାଳନ୍ଦୀ- ଏ ଦୁଇ ନଦୀ; ପ୍ରଥମଟି ତାଙ୍କ ମାମୁଘର ଗାଁ ପାଖଦେଇ ବହି ଯାଉଛି, ଆରଟି ନିଜ ଗାଁ ଭଦ୍ରକ ଦେଇ। ଏ ଦୁଇ ସ୍ରୋତସ୍ୱିନୀକୁ ସେ ଆଦରି ନେଇଛନ୍ତି ମା' ଭାବରେ। ତାକୁ ନେଇ ତାଙ୍କ ସୁଖ, ଦୁଃଖର ଜୀବନ କଥା। ପ୍ରକାଶ ଭଙ୍ଗୀର ଅଭିନବତ୍ୱ ଉପର୍ଯ୍ୟୁକ୍ତ ଜୀବନୀ ଭତିକ ସୃଷ୍ଟିକୁ କରିଛି କାଳଜୟୀ।

୧୮୮୮ ମସିହା, ଡିସେମ୍ବର ୯ ତାରିଖ, ମାଣବସା ଗୁରୁବାର। ଲକ୍ଷ୍ମୀକାନ୍ତ ସୂର୍ଯ୍ୟାଲୋକ ଦେଖିଲେ କଟକ ସହର ଅନ୍ତର୍ଗତ ଧୂଆଁ ପତରିଆ ଗଳିର ଗୋଟେ ଭଡା ଘରେ। ପିତା ଜମିଦାର ତଥା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର। ମାତା ରାଧାମଣି ଦାସୀ ବୈତରଣୀ କୂଳ କଣ୍ଟାପାରି ଗାଁର ବିଖ୍ୟାତ ସରକାରୀ ଅମଲା ଦୁର୍ଯ୍ୟୋଧନ ଦାସଙ୍କ କନ୍ୟା। ଲକ୍ଷ୍ମୀକାନ୍ତଙ୍କ କୈଶୋର କଟିଛି ସେଇ

ନଈକୂଳିଆ ମାମୁଘର ଗାଁରେ । ବସନ୍ତରେ ମୃଦୁମନ୍ଦ ମଳୟ, ବର୍ଷାରେ କୂଳ ଉଚ୍ଛୁଳା ବେଗ ଗାମିନୀର କରାଳରୂପ, ଶରଦରେ କାଶ ହାସମୟୀ ନଈପଠା, ଶୀତରେ ସୋରିଷ ଫୁଲିଆ ଗୀତ, ନିଦାଘରେ ଶୀର୍ଣ୍ଣକାୟା ବୈତରଣୀ; ଯୌବନ, ବାର୍ଦ୍ଧକ୍ୟରେ ଶାଳନ୍ଦୀସହ ସ୍ରଷ୍ଟା ନିଜ ଜୀବନଧାରାକୁ ସଂଯୋଜିତ କରିଦେଇଛନ୍ତି । ତାଙ୍କ ପହିଲି ଜୀବନର ସୁନେଲି ସ୍ୱପ୍ନକୁ ନେଇ "ଶୈଶବ ସ୍ମୃତି" ।

କୁହୁଡି ଘେରା କଣ୍ଟାପାରି ମାମୁଘର ଗାଁ । କୁହୁକ ପରି ଝଟ ଝଟ ହୁଏ ଚକ୍ରବାଳ ଉହାଡରେ । ତାହା ଆଜି ସ୍ରଷ୍ଟାଙ୍କ ସ୍ମୃତି ବିକ୍ଷୁବ୍‌ଧ ଅନ୍ତର ସମୁଦ୍ରକୁ ତରଙ୍ଗାୟିତ କରେ । ତାରୁଣ୍ୟର ଶାନ୍ତ, ମଧୁର, କୋମଳ; ସ୍ନିଗ୍ଧକରେ, ମୁଗ୍ଧକରେ, ତନ୍ମୟକରେ- ସେଇ ପିଲାଦିନର ସ୍ମୃତିକୁ । ସେ ଝୁରିହୁଅନ୍ତି ହଜିଲା ଅତୀତକୁ । ସତରେ କିଏ ଫେରାଇ ଦିଅନ୍ତାକି ସେଇ ପିଲାଦିନକୁ! ତାହା କି ଆଉ ସମ୍ଭବ? ଏବେ ଜୀବନ ବେଳାଭୂମିରୁ ସୁନେଲି ସ୍ମୃତି- ଶାମୁକା ସାଉଁଟିବା ସାରା ଯାହା!

ମା' ନାହିଁ ଯାହାର ଦୁନିଆରେ ସାହା ନାହିଁ ତା'ର । ଶୈଶବରେ ମା'ଙ୍କର ଆଦର, ସ୍ନେହ, ଯତ୍ନ ଶିଶୁକୁ ଗୋଡ ସଳଖିବାରେ ସହାୟକ ହୁଏ । ମା' ଛେଉଣ୍ଡମାନେ ଅନାଥ ପାଲଟି ଯାଆନ୍ତି । ଲକ୍ଷ୍ମୀକାନ୍ତ ତ ମାମାଙ୍କ ଆଦର ଯତ୍ନ ଢେର ପାଇଲେ; କିନ୍ତୁ ତାଙ୍କ ପିଲାଦିନ କଟିଲା ମାମୁଁ ଘରେ । ବୈତରଣୀକୁ ମା' ରୂପେ ଆଦରି ନେଲେ, ବିହ୍ୱଳ ହୋଇଗଲେ ତା'ର ଆଦର ପଣରେ । ତାଙ୍କ ନୂଆ ମା' ସମ୍ପର୍କରେ ଲେଖିଲେ "ଶୈଶବ ସ୍ମୃତି" ରେ, " ଶିଶୁ ପହିଲୁ ଚିହ୍ନେ ତା'ର ମା'କୁ । ମୁଁ କିନ୍ତୁ ପହିଲୁ ଚିହ୍ନିଥିଲି ମାତା ରୂପିଣୀ ବୈତରଣୀକୁ, - ତା'ରି ମଧୁମୟ କୋଳରେ ହୋଇଥିଲା ମୋର ପ୍ରଥମ ନୟନ ଉନ୍ମୀଳନ, ଝଲସି ଉଠିଥିଲା ମୋ ନେତ୍ର ପଥରେ ବୈତରଣୀର ବର୍ଣ୍ଣୋତ୍ସବମୟୀ ବିଚିତ୍ର ସୁଷମା ଶିରା ପ୍ରଶିରା ଭେଦ କରି ଅଣୁ ପରମାଣୁ ରୂପେ" । ବିଚିତ୍ର ବର୍ଣ୍ଣା ନଦୀକୁ ନେଇ କାହିଁ କେତେ ପ୍ରକାର ଦାର୍ଶନିକ ପରିକଳ୍ପନା । କେଉଁ କବି ନଦୀ, ସାଗର ସଂଗମକୁ ଆତ୍ମା ପରମାତ୍ମାର ମହାମିଳନ, ଆଉକିଏ ନଦୀର ସ୍ରୋତକୁ ଜୀବନ ସହ ଅବା ଗଡିଯାଉଥିବା କାଳ, ମହାକାଳ ସହ ତୁଳନା କରିଛନ୍ତି । ଏ କ୍ଷେତ୍ରରେ ନଦୀ, ଜୀବନ ସଂପର୍କ କଥାକୁ ନୂଆ ବାଗରେ ଲକ୍ଷ୍ମୀକାନ୍ତ କହିଛନ୍ତି ନିଶ୍ଚୟ ।

ଜୀବନ ଯାତନାକ୍ଲିଷ୍ଟ ଆତୁର କବି ପ୍ରାଣ ଖୋଜେ ଶୈଶବ ସ୍ମୃତିକୁ । ବ୍ୟଥାତୁର, ପ୍ରାଣଟି ଆର୍ତ୍ତନାଦ କରେ । ସ୍ମୃତି ଦିଏ ଶାନ୍ତି । ମାତା ବୈତରଣୀ ତା'ର ସ୍ନେହାଶୀଷ ବୋଳା କରୁଣ ଦୃଷ୍ଟି କଲ୍ୟାଣର ଅମୃତ ଧାରା ବର୍ଷଣ କରିଦିଏ । ଅନ୍ତରାତ୍ମା ହୁଏ ଶୀତଳ । ଆସେ

ଚରମ ପ୍ରଶାନ୍ତି । ଆନମନା ସ୍ରଷ୍ଟା କହି ଦିଅନ୍ତି ନିଜ ମନକଥା ପଦକ ଦାର୍ଶନିକ ଭଙ୍ଗୀରେ, "ଯାହାର ବର୍ତ୍ତମାନ ଅସ୍ପଷ୍ଟ ଓ ଭବିଷ୍ୟତ ଅନ୍ଧକାର ମୟ, ତାହାର ଏହି ମଧୁ ଗନ୍ଧଭରା ମନୋରମ ଅତୀତ ହିଁ ଆଶ୍ରୟସ୍ଥଳ । ହେଲେ ଏହି ଆନନ୍ଦମୟ ଅତୀତର ଅନ୍ତରାଳେ, ଯେଉଁ ବେଦନା ନିହିତ ରହିଛି, ତା'ର ଅନୁଭବଟି ବଡ ମଧୁର । ସେତକ ସତେ ତା'ର ସୁଦଆଦିଆ ରସ । ଏହି ବେଦନା ଟିକକ କେତେ ପ୍ରିୟ ।" ବୈତରଣୀ ସହ ବିଜଡିତ ଶୈଶବ ସ୍ମୃତିର ମଧୁମହକରେ ଉଦ୍‌ଭାସିତ ହୋଇ ଉଠିଛି ବେଦନା ସିକ୍ତ ଜୀବନ । ତାହା ହିଁ ଲକ୍ଷ୍ମୀକାନ୍ତଙ୍କର ଏକ ନିଆରା ଅନୁଭବ ।

ବିଚିତ୍ର ସେ ଶୈଶବ । ପ୍ରତ୍ୟେକ ଶିଶୁର ଥାଏ ଜିଜ୍ଞାସୁଭାବ । ସେ ଜାଣିବାକୁ ଚହେଁ ତା'ର ଅସ୍ତିତ୍ୱ, ମା' ପାଖରେ ଅଳିକରେ ବୁଝିବାକୁ ତା'ର ସୃଷ୍ଟି ରହସ୍ୟ- ଯେମିତି ସେ କିଏ, କିପରି କାହୁଁ ଆସିଲା । ଲକ୍ଷ୍ମୀକାନ୍ତ ସେଦିନ ସେଇ କଥା ପଚାରିଥିଲେ ତାଙ୍କ ମାମାଙ୍କୁ । ଉତର ଥିଲା ଏହିପରି ମନଗଢା କାହାଣୀଟିଏ, "ଦିନେ ବୈତରଣୀ ନଦୀରେ ସେ ଗାଧୋଇଲାବେଳେ ଆଟିକାଟିଏ ଭାସି ଭାସି ଆସି ତାଙ୍କ ଦେହରେ ଲାଗିଲା । ସେ ତାକୁ ଧରି ଦେଖିଲେ ତା'ଭିତରେ ପିଲାଟିଏ । ସେଇ ପିଲା କୁଆଡେ ମୁଁ ।" ଏହା କହାଣୀ ହେଲେବି ଲାଖି ଯାଇଥିଲା ଲକ୍ଷ୍ମୀକାନ୍ତଙ୍କ ମନରେ । ସତକୁ ସତ ବୈତରଣୀକୁ ସେ ତାଙ୍କର ଜନ୍ମଦାତ୍ରୀ ମାତା ରୂପେ ପ୍ରତ୍ୟୟ କରି ପକାଇଲେ । ଶୈଶବରେ ଗୋଟିଏ ଗୋଟିଏ କ୍ଷୁଦ୍ର ଧାରଣାରେ ମାନବ ପ୍ରକୃତି ଗଠିତ । ତାହା ଜୀବନର ଗତିପଥ ନିୟମିତ କରିଦିଏ - ଏକଥା ପଣ୍ଡିତମାନେ କହିଛନ୍ତି । ତାହାହିଁ ସତ୍ୟ ହେଲା ଲକ୍ଷ୍ମୀକାନ୍ତଙ୍କ କ୍ଷେତ୍ରରେ ।

ଶୈଶବ ସ୍ମୃତିକୁ ନେଇ ଲେଖକ ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି ନଈକୂଳିଆ ଗାଁର ପ୍ରାକୃତିକ ଶୋଭା ସୁଷମାକୁ । ତାଙ୍କ ମାମୁଘର ଗାଁକୁ ସକାଳ ଆସେ । ମା' ବଡି ସକାଳୁ ଯାଆନ୍ତି ନଈକୁ । ପଛେ ପଛେ କୁନି କୁନି ପାଦ ପକେଇ ଚାଲନ୍ତି ଶିଶୁ ଲକ୍ଷ୍ମୀକାନ୍ତ । ପୂର୍ବ ଦିଗରୁ ସୂର୍ଯ୍ୟ ଉଇଁ ଉଇଁ ଆସୁଥାନ୍ତି । ନାଲି ନାଲି ମଧୁର ଖରା ତୀରସ୍ଥ ତାଳ ଗଛର ମଥାନ ଉପରେ ଅବିର ବୋଳିଦିଏ । ବୈତରଣୀର କ୍ଷୁଦ୍ର କ୍ଷୁଦ୍ର ହିଲ୍ଲୋଳରେ ସହସ୍ର ଇନ୍ଦ୍ରଧନୁ ବିକଶି ଉଠେ । କାକର ବୋଳା ନଈବାଲି ଚହଟି ଉଠେ ହୀରା ଲୀଳା ମାଣିକ୍ୟର ଦ୍ୟୁତି ଧାରଣ କରି । ତୋଟା ଆମ୍ବଗଛରେ କୋଇଲି ଡାକ ମାରେ କୁହୁ-କୁହୁ । ମହାଦେବ ବଉଳ ଡାଳରୁ ତାର ସାଥୀ ଦିଏ ତା'ର ପ୍ରତ୍ୟୁତ୍ତର କୁ- । ଶିଶୁ ଲକ୍ଷ୍ମୀକାନ୍ତ ଏବେ ଅସମ୍ଭାଳ । କୁ କୁ କରି ଧାଇଁ ବୁଲନ୍ତି କୋଇଲି ସହିତ ପ୍ରତିଯୋଗିତା କରି । କିଆ ବୁଦାରୁ ଡାହୁକ ଦିଏ ଡାକି । ନଈ ସେପାରିରୁ କୁମ୍ଭାଟୁଆ ଦିଏ ତା'ର ପ୍ରତିଧ୍ୱନି । କାପଡା ଡାକେ ଲଣ୍ଡା

ଶିମିଳିଗଛ ଉପରୁ - 'ଉଠରେ ପୂତା' । ହଳଦି ବସନ୍ତ ନିମ ଗଛରେ ବସି ସୁଷୁରି ମାରେ । ନୂଆ ଭୁଆଷୁଣୀମାନେ ଗରା କାଖେଇ ଗାଧୋଇ ଆସନ୍ତି । ତାଙ୍କର ଝୁମୁଝୁମୁ ଝୁଣ୍ଟିଆ ନାଦ ଶୁଭୁଥାଏ ନଈ ବାଲିରେ ଥମକି ଥମକି- ଆହା ! କି ଅପୂର୍ବ ସେଇ ଗାଁ ନଈକୂଳିଆ କୈଶୋର ସ୍ମୃତି ଟିକକ !

ଦିନ ଯାଏ-ଦିନ ଆସେ । କିନ୍ତୁ ଯାହା ଯାଏ ଆଉ ଫେରି ଆସେ ନାହିଁ । ରହିଯାଏ ଏକା ଅତୀତର ସ୍ମୃତି । ସେତକ ଥାଏ ବୋଲି ମଣିଷ ତାକୁ ହିଁ ଶଙ୍ଖାଳି କରି ସହିପାରେ ଦୁର୍ଦ୍ଦିନର ଦାବଦାହ । ସଂସାରର କଠୋର ପରୀକ୍ଷା ଭିତରେ ଯେତେବେଳେ ପ୍ରାଣ ହାହାକାର କରି ଉଠେ, ସେତେବେଳେ କେଉଁ ଗହନ ଅନ୍ତରାଳରୁ ଶୁଣାଯାଏ ସେଇ ଛାତି ଫଟା ମଧୁର ଧ୍ୱନି-କୁଉ !

(୨)

ଶିଶୁଟି ଯୁଗେ ଯୁଗେ ସରଳ, ନିଷ୍ପାପ । ଛଳନା, ପ୍ରତାରଣା, ପ୍ରବଞ୍ଚନା, ପରଶ୍ରୀକାତରତା ଆଦି କୁପ୍ରକୃତିର ଲେଶମାତ୍ର ପ୍ରଭାବ ତା'ଉପରେ ପଡ଼େନି । ଫୁଲକୁ ଦେଖି ସେ ଖୁସିହୁଏ, ପ୍ରଜାପତି ଧରିବାକୁ ହାତ ବଢ଼ାଏ, ପକ୍ଷୀର କାକଳିକୁ କାନପାତି ଶୁଣେ, ନଈର କୁଳୁ କୁଳୁ ଗୀତରେ ବିମୋହିତ ହୁଏ । ସେ ତ ଅମୃତର ସନ୍ତାନ । ତା'ର ରାଗ, ରୋଷ, ହର୍ଷ, ଆନନ୍ଦ; ସବୁଥିରେ ଥାଏ ଗୋଟେ ଗୋଟେ ସ୍ୱର୍ଗୀୟ ଗୁଣାବଳୀର ପବିତ୍ର ସ୍ପର୍ଶ । ହେତୁ ପାଇଲେ ସେ ଦେଖେ ଗୋଟେ ଭିନ୍ନ ଦୁନିଆ; ଅଲଗା ପରିବେଶ । ତା'ର ମାନସିକତା, ଚରିତ୍ର, ଚାଲିଚଳଣିରେ ଘଟେ ପରିବର୍ତ୍ତନ । ମାତ୍ର ଶିଶୁହିଁ ଶିଶୁ, ତା'ର ବାଲ୍ୟସୁଲଭ ଚଳପତା ଉତ୍ତର ଜୀବନ ପାଇଁ ସ୍ମୃତିଟିଏ ହୋଇ ରହିଯାଏ । ଏଣୁ ଶୈଶବ ସ୍ମୃତି ଭାରି ମିଠା; ଅତ୍ୟନ୍ତ ଚିତ୍ତ ଉଲ୍ଲାସକାରୀ । ସେଇ କଥାକୁ ଲକ୍ଷ୍ମୀକାନ୍ତ ମହାପାତ୍ର ପରିଶି ଦେଇଛନ୍ତି ପାଠକ ଆଗରେ; ତାହା ଅତୀବ ରୋମାଞ୍ଚକର । ପ୍ରକାଶ ଭଙ୍ଗୀ ମଧ ସମପରିମାଣରେ କଳାତ୍ମକ ।

କଣ୍ଢାପାରି ଗାଁ ଧାରେ ଧାରେ ବହିଯାଉଛି କଳନାଦିନୀ ବୈତରଣୀ, ଆରପାରି ପାଳ ମଝିରୁ ହଳୁଆ ଛାଡିଦିଏ ତା'ର ହଳଗୀତ, କିଛି ବୁଝି ହୁଏନି; କିନ୍ତୁ ସ୍ୱରଟା କାନଭିତରେ ପଶି ମରମରେ ବାଜି ଉଠେ । ନଈ ବାଲିରେ ଧାଡି ଧାଡି ମାଛରଙ୍କା ଶୋଭା ପାଉଥାନ୍ତି ଧାଡି ଧାଡି ପଦ୍ମଫୁଲପରି । କେଉଁଠି ଭଦଭଦଳିଆ ତ ଅନ୍ୟ ଦିଗରେ ଶଙ୍ଖଚିଲ ଚକର ମାରନ୍ତି । ଶିଶୁ ଲକ୍ଷ୍ମୀକାନ୍ତ ବିହ୍ୱଳ ହୋଇଯାନ୍ତି ଏମାନଙ୍କୁ ଦେଖି । କେବେ ଭଦଭଳଦିଆର ପରଟିଏ ଦେଖିଲେ ସାଉଣ୍ଟି ଆଣନ୍ତି କୋଟି ନିଧିକରି । ଭରତିଆପକ୍ଷୀ

ମୁହଁ ଉହିଁଲେ ଯଶହୁଏ; ଏକଥା ମାମୁ କହିଛନ୍ତି । ଯଶ ଅପଯଶ କଥା ଶିଶୁଟି ବା କ'ଣ ବୁଝେ ? ତଥାପି ସେଇ ସୁନ୍ଦରିଆ ପରମାନ ଟାଣିନିଏ ତା' ମନକୁ । ନଈକୂଳିଆ କଣ୍ଟାକୁସୁମରେ ହଳଦିଗୁରୁଗୁରୁ ଫୁଲ, ତା'ଉପରେ ବସିଥାନ୍ତି ରଙ୍ଗୀନ ପ୍ରଜାପତି । ଲକ୍ଷ୍ମୀକାନ୍ତ ପ୍ରଜାପତି ପଛରେ ଦଉଡନ୍ତି ଧରିବାକୁ । ନିତି ସକାଳର ଏସବୁ ଅଭୁଲା ସ୍ମୃତି ।

ଦିନ ପହର ସରିକି ନଈକୂଳରେ ଗାଁ ମାଇପେ ଗୁଣ୍ଡ ହୋଇଯାନ୍ତି, ସାଙ୍ଗରେ କୁନି କୁନି ପିଲାଏ । ସେମାନେ ନଈରେ ଗାଧୋଇ ଥାନ୍ତି । ମାଇପଙ୍କ ଭିତରେ କେତେ କଥା, କେତେ କଳି, କେତେ ହସ, କିଛି ବୁଝନ୍ତିନି ଲକ୍ଷ୍ମୀକାନ୍ତ । ସାଙ୍ଗ ପିଲାଏ ମିଶି ସମସ୍ତେ ତିଆରି କରନ୍ତି ବାଲି ଦେଉଳ । ଚୂଳ ଉପରେ ଶିମୁଳି ଫୁଲ ବସାଇ ଉଡ଼ାଇ ଦିଅନ୍ତି ରଙ୍ଗ ପତାକା । ଓଦା ବାଲିରେ ପାଦ ପୂରାଇ ଶିଆଳ ଗାତ ତିଆରି କରି ଆପେ ଆପେ ଭାଙ୍ଗିଦିଅନ୍ତି, ପୁଣି ଗଢ଼ନ୍ତି । ଏମିତି ଭଙ୍ଗା ଗଢ଼ାର ଅନ୍ତ ନାହିଁ । ଏ ତ ବାଲ୍ୟସ୍ମୃତି । ଏବେ ଉତ୍ତର ଜୀବନରେ ସଭିଁଏ ଅନୁଭବ କରନ୍ତି ବାଲିଘର କଥା । କେତେ ତିଆରିହୁଏ, କେତେ ତୁଟେ, ଉତ୍‌ଥାନ ପତନ; ଏ ପରା ଦୁନିଆର ରୀତି ।

ଶୈଶବ ସ୍ମୃତିରୁ ପାଠକେ ପାଇଥାନ୍ତି ଗ୍ରାମ୍ୟ ଚଳଣି, ପରଂପରା, ବିଶ୍ୱାସ ବୋଧରକଥା । ଗାଧୁଆପରେ ଗ୍ରାମ୍ୟ ବଧୂଙ୍କ କୋଥଳିଫିଟା, ଠାକୁର ସେବା, ପାଦୁକା ସେବନ; ଦିଅଁଙ୍କୁ ଧୂପ, ଦୀପ, ନୈବେଦ୍ୟ ପ୍ରଦାନ, ମୁଣ୍ଡରେ ଚନ୍ଦନ, ଗୋଚନା ଟିପା ଧାରଣ ଆଦି ସାତ୍ତ୍ୱିକ ଚିନ୍ତନ ଏକଦା ଜନ-ଜୀବନକୁ ରସସିକ୍ତ କରିଥିଲା । ଶୈଶବରେ ଲେଖକ ଜାଣିନଥିଲେ, ବୁଝିନଥିଲେ; ତାଙ୍କ ପାଇଁ ଠାକୁର ହିଁ ଠାକୁର । ବାଣ୍ ସେତିକି, ଠାକୁରଙ୍କୁ କିଛି ମାଗି ଶିଖିନଥିଲେ; ଖାଲି ଜୁହାରଟିଏ ଦେଉଥିଲେ । ଏ ବିଶ୍ୱାସବୋଧର କଥା ସୃଷ୍ଟି କରିବା ପାଇଁ ଗାଁରେ ଆଉ ସେ ପରିବେଶ ନାହିଁ । ସେବେକାର ଭଗବତ ବିଶ୍ୱାସକୁ ଏବେ ବାଘ ଖାଇଲାଣି । ଠାକୁର ନିର୍ଜୀବ ପଥର ପାଲଟି ଗଲେଣି । କୂଟ, ତର୍କ, ସନ୍ଦେହ ବିଷର ଆସି ଆସି ସେହି ନିର୍ମଳ ଚିତ୍ତକୁ କଳୁଷିତ କରି ପକାଇଲାଣି । ଆଉକି ତାହା ଫେରିବ ? ହାତ ପାହାନ୍ତାରେ ଯାହାଥିଲା, ସେ ସ୍ୱର୍ଗ କେତେ ଦୂରକୁ ଘୁଞ୍ଚିଗଲାଣି !

ଆଉ ଗୋଟେ ଶୈଶବ ସ୍ମୃତି । ମାମା ଶୁଆଇ ପକାନ୍ତି ଲକ୍ଷ୍ମୀକାନ୍ତଙ୍କୁ ଦିପହରରେ । ତାଙ୍କ ଆଖି ଲାଗିଲେ ସେ ଧୀରେ ଧୀରେ ଉଠି ଚୋରଙ୍କ ପରି ଚାଲିଯାନ୍ତି ଆମ୍ବତୋଟା ଆଡେ । ସେଠି ସାଙ୍ଗ ପିଲାଏ ଥାନ୍ତି, ଚାଲେ ରାଜାମନ୍ତ୍ରୀ ଖେଳ; ଲୁଚକାଳି ଖେଳ-ଏମିତି କେତେ ପ୍ରକାର ଖେଳ ଲାଗେ । ଚାଲେ ଦୁଷ୍ଟାମି ।କେଉଁ ଦିନ ସପ୍ତଫେଣୀ ଫୁଲରେ ଠାକୁର

କରନ୍ତି । କାହା ବାଡିରେ କଞ୍ଚାଆମ୍ବ, କଇଆଁ, ବରକୋଳି, ପିଜୁଳି; କାହା ଅଗଣାରେ ଆମ୍ବୁଲ, ତେନ୍ତୁଳି ଶୁଖୁଥିଲେ ସେଥିରୁ ପୁଳାଏ ପୁଳାଏ ଖାଇବା ପାଇଁ ଘଲେ ସାହିବୁଲା । ଦହଦଇଆ ପତ୍ରରେ ଛେନା କରି ଖାଇବା ସ୍ୱାଦ ବା କିଏ ଭୁଲିପାରିବ ? ଦିନଯାକ ଖରାରେ ବୁଲିବୁଲି ସୂର୍ଯ୍ୟଙ୍କ ମୁହଁ ଲାଲପଡିଯାଏ । ତା ମା' ସୁନେଲି ପଣତ ମେଲାଇ ଦେଇ ପୁଅକୁ ତାଙ୍କର ଟାଣି ଟାଣି ନେଇଯା'ନ୍ତି କାନିରେ ଗଣ୍ଠି ପକାଇ । ବେଳ ବୁଡିଆସେ । ଦକ୍ଷିଣା ପବନ ବହୁଥାଏ । ନଦୀ ଜଳରେ ବାଜି ସେ ପବନ କେତେ ଶୀତଳ । ବଡ଼ ବଡ଼ ମାନେ ବଉଳତଳ ପିଣ୍ଡିରେ ବସି ପଶା, ତାସ ଖେଳୁଥାନ୍ତି । ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟାରେ ଡାହାଣିଆ ଖରା ବନ୍ଧ ହୋଇଯାଏ । ବୈତରଣୀ ସ୍ୱଚ୍ଛବକ୍ଷରେ ନାଲି ରଙ୍ଗ ଚହଟି ଉଠେ । ଘହୁଁ ଘହୁଁ ନଡିଆ ଗଛ ବାଉଁଶ ବୁଦା ମୂଳରେ କିଏ ରଙ୍ଗ ମୁକୁଟ ପିନ୍ଧାଇଦିଏ । ଧୀରି ଧୀରି ଦକ୍ଷିଣା ପବନରେ ଦୋହଲୁଥାଏ ତୀର ଭୂଇଁର ତାଳଗଛଗୁଡାକ ଝଣଝଣ ଶବ୍ଦକରି । କୁଳ ବଧୂଗଣ ହଲି ହଲି କଳଶ କାଖେଇ ବାହାରି ଆସନ୍ତି ଓଢ଼ଣା ପକାଇ । ଦରମୁକୁଳା ମୁହଁରେ କାହାର ଡାହାଣିଆ ଖରା ପଡିଗଲେ ଝଟକି ଉଠେ ତା'ର ଗୋରା ତୋରା ମୁହଁଟା, ଚମକିପଡି ସେ ଓଢ଼ଣା ଟାଣିଦେଇ ମୁହଁ ବୁଲାଇ ନିଏ । ପାହୁଡର ଝୁମ୍ ଝୁମ୍ ନାଦ ତାଳ ଝାଡର ଝଣଝଣ ଧ୍ୱନି ସହିତ ମିଶି ରଚନା କରେ ଏକ ଅପୂର୍ବ ସଙ୍ଗୀତର ସମତାନ । ଆର ପାରି ବାଉଁଶ ଉହାଡରୁ ମାଡି ମାଡି ଆସେ କାଳି ଅନ୍ଧାର ।

ସାୟଂକାଳୀନ ଗାଁର ସାଂସ୍କୃତିକ ଜୀବନ ସ୍ମୃତି ଲେଖକଙ୍କ ମାନସ ପଟରେ ଲାଖି ହୋଇଯାଇଛି । ସଞ୍ଜଆସେ, ନଈ ସେପାରିରୁ ସନ୍ଧ୍ୟାଆଳତିର ଘଣ୍ଟା, ଘଣ୍ଟ ଧ୍ୱନି ଶୁଭେ । ନଈକୂଳ ଡେଙ୍ଗା ତାଳଗଛର ଛାଇ ଗୁଡାକ ପାଣିଭିତରେ ଅଜଗର ସାପ ପରି ବାଙ୍କି ବାଙ୍କି ହଲୁଥାଏ । ବିଶିରିବାଗ ତୋଟାର କିଆ ବଣରୁ ବିଲୁଆ ନନା ରଡି ଛାଡେ ସେତିକି ବେଳେ, 'ହୁକେହୋ' । ତାକୁ ପିଲାଏ ଖଡେଇ ହୋଇ ଏକାଥରେ ଡାକନ୍ତି, "ହୁକେ ହୁକେ ଜୟି ନାହକୋ/ ନିଆଁ ରଡଖଣ୍ଡି କାଖରେ ଜାକେ ।" ଘରକୁ ଫେରି କିଏ ଖେଳେ 'ଅକଲ ମକଲ ଟକଲ ଟିଆ' ତ କିଏ ତୁଳସୀ ଚଉଁରା ଘରିପଟେ ବୁଲି ବୁଲି ଗାଏ, "ଚକାଚକା ଭଉଁରୀ, ମାମୁ ଘର ଚଉଁରୀ........ । ଜହ୍ନି ଫୁଲିଆ ଜହ୍ନରାତି । ପିଲାଏ ବୁଲନ୍ତି ସାହି ସାହି । କେଉଁଠି ବଡ ବଡ ଝିଅମାନେ ନୂଆ ବୋହୂଙ୍କ ଠଉଁ ବାହାଘର କାନ୍ଦଣା ଶିଖୁଥାନ୍ତି । କେଉଁଠି କୁଆଁର ପୁନେଇଁ ଅବା ରଜଦୋଳି ଗୀତ ଶିଖନ୍ତି । ସାନସାନ ଝିଅ ବୁଢ଼ୀମାଉସୀ ଖେଳରେ ମାତିଥାନ୍ତି । ବଡ଼ ସରାଗରେ ଗାଉଥା'ନ୍ତି, 'ଇଛୁଡି ମିଛୁଡି, ଧାଇଁ ଚିଡି ଚିଡି, କଇଥ କାକୁଡି ପିତା ନଳିତା....... ।" କେଉଁଠି ଗାଁ ଟୋକାଙ୍କର

ଆଖଡା, ରାମାୟଣ ମହାଭାରତ ଅଭିନୟର ପ୍ରସ୍ତୁତି । ଶୁଭୁଥାଏ ରାବଣର ଦମ୍ଭୋକ୍ତି, ଭୀମର ଭୟଙ୍କର ରଡି, ଦୁର୍ଯ୍ୟୋଧନର ନିଧନ କାଳୀନ କରୁଣ ମିନତି । ଗାଁ ଭାଗବତ ଟୁଙ୍ଗୀରେ ଜଗନ୍ନାଥ ଦାସଙ୍କ ଦଶମ ସ୍କନ୍ଧ ଭାଗବତ ଚର୍ଚ୍ଚା । ପୁରୋହିତ ଆବୃତ୍ତି କରନ୍ତି, ରୁଣ୍ଡ ହୋଇ ଶୁଣୁଥାନ୍ତି ବୟସ୍କ ବୟସ୍କାମାନେ । ଏସବୁ ସେ କାଳରେ ସବୁ ଗାଁରେ ଊଣା ଅଧିକେ ଥିଲା ଯାହା, କରିଥିଲା ସାମାଜିକ ବ୍ୟବସ୍ଥାକୁ ଶୁଦ୍ଧପୂତ । ଅଧୁନା ସର୍ବତ୍ର ବଦଳାସ୍ଥିତି । କାନ୍ଦଣା ଗୀତ, କୁଆଁର ପୁନେଇଁର ଫୁଲ ବଉଳ ବେଣୀ ଅବା ରଜଦୋଳି ଗୀତର ବନସ୍ତେ ଡାକିଲା ଗଜ......, –ଏଗୁଡିକ ଏବେ ସପନର ସପନ ।

ଲେଖକଙ୍କ ଶୈଶବ ଏବେବି ତାଙ୍କୁ ଆନମନା କରିଦିଏ, ବୈତରଣୀକୁ ଆସ୍ତେ ଢ଼ାଙ୍କିଦିଏ ସନ୍ଧ୍ୟାରାଣୀ କଳା ପଣତ କାନିରେ । ସାଥୀ ମେଳରେ ଗୋଟେଇଥିବା ଶାମୁକାତକ କାନିରେ ବାନ୍ଧି ଲକ୍ଷ୍ମୀକାନ୍ତ ଘରକୁ ଫେରନ୍ତି । ଏଗୁଡିକ ଧନ ଦଉଲତ ନୁହେଁ; ତଥାପି ପିଲାଏ ଏହାକୁ ପାଇ ହୋଇଯାଆନ୍ତି ମହାଧନୀ । ଏ କ୍ଷେତ୍ରରେ ଶିଶୁ ମନସ୍ତତ୍ତ୍ୱକୁ ସ୍ରଷ୍ଟା ଚମତ୍କାର ଭାବରେ ବଖାଣିଛନ୍ତି, "ଆମେ ମନେ ମନେ ହୋଇଯାଉଁ ବଡ଼ ଲୋକ । କିନ୍ତୁ ତହିଁଆରଦିନ ସେ ଧନର ପତ୍ତା ନଥାଏ । ଏବେ କେତେ ଲହୁଲୁହ ବୁହାଇ, ଝାଳନାଳ ହୋଇ ଯେଉଁଧନ ଅର୍ଜନ କରୁଛୁ ଆମେ- ଏଇ ଶାମୁକାଠାରୁ କେତେ ତଫାତ ?" ଶିଶୁଟିଏ ଶାମୁକାର ସୌଦାଗର, ସେ ହୋଇଯାଏ ରାଜା ମହାରାଜା । କିନ୍ତୁ ପ୍ରକୃତଧନ; ମେହେନତର କମେଇ ହେଉ ଅବା ଅସତ୍ ଉପାର୍ଜନ କି ପରତଣ୍ଟି ଚିପା ଶୋଷଣ ପୁଞ୍ଜି – ଏସବୁ କାହାକୁ କି ଧନୀ କରେ ? ଶୈଶବର ବିଶୁଦ୍ଧ ଆନନ୍ଦ ଟିକକ ଏଥିରେ ନଥାଏ । ଅଳ୍ପ ଟଙ୍କା ବହୁତ ଟଙ୍କାକୁ ଟାଣେ; ଲୋଭ ବଢ଼ାଏ । ତା'ପରେ ପତନ ହିଁ ପତନ ।

ବୟସର ଅପରାହ୍ନ ଆସି କବାଟ ବାଡାଏ । ଏଣିକି ନୂଆ ଯାତ୍ରାର ସଜବାଜ । ମନ ଲମ୍ବି ଲମ୍ବି ଯାଏ ଦୂର ଅତୀତକୁ । ସୁନେଲି ସ୍ମୃତିମାନେ କିଲ୍‌ବିଲ୍ କରନ୍ତି । ତଥାପି ଶାନ୍ତି ଆଣନ୍ତି । ମାମୁ ଘର ବୋଲି କଥାଟା ପ୍ରତ୍ୟେକ ଲୋକର ପ୍ରିୟ; କିନ୍ତୁ ଲକ୍ଷ୍ମୀକାନ୍ତଙ୍କ ପାଇଁ ମାମୁଘର ଅନୁଭୂତି ଅତ୍ୟନ୍ତ ମନଛୁଆଁ । ସେ ପ୍ରସଙ୍ଗକୁ ସେ ପାଠକଙ୍କ ଆଗରେ ଥୋଇଛନ୍ତି, "ମୋ ମାମୁଘର ଚୁମ୍ବକ ପଥର ଭଳି ମୋର ମନ ମୁନ୍‌କୁ କି ଏକ ମଧୁର ଆବେଗରେ ଆକର୍ଷଣ କରି ରଖିଛି ଜୀବନସାରା । ସେଇ ଗୋଟିଏ ସ୍ନିଗ୍ଧ ସୁଆଦିଆ ସ୍ମୃତି ଧ୍ରୁବତାରା ରୂପେ ଚିର ଭାସ୍ୱର ହୋଇ ମୋର କ୍ଷୀନ୍ନ, ଅବସନ୍ନ, ବ୍ୟଥାତୁର ପ୍ରାଣକୁ ଦେଇଛି ଆଶା, ଆଶ୍ୱାସନା, ଆନନ୍ଦ । ଏହି ସ୍ମୃତି ଫିଟାଇ ଦେଇଛି ଏକ ଅସରା ଅମୃତର ପ୍ରସବଣ, ଯାହା ଆସ୍ୱାଦନ କରି ମୋର ଜର୍ଜରିତ ଚିତ୍ତରେ ହେଉଛି ଜୀବନ ସ୍ପନ୍ଦନର କ୍ଷୀଣ

ଅନୁଭୂତି ।" ଶୈଶବ ଅତୀତ, ଚାହିଁଲେ ଆଖି ପାଏନି । ଏହା ସତ୍ତ୍ୱେ; ଜଟିଳ, ଜଞ୍ଜାଳ, ଜ୍ୱାଳାମୟ ଜୀବନ ଯନ୍ତ୍ରଣାରୁ ଦିଏ ଟିକିଏ ସାରା ରାହା । ସେଇଥି ପାଇଁ ତ ଶୈଶବ ଚିର ଅଭୁଲା, ଏ କଥାଟି ଯୋଗୀ, ଭୋଗୀ, ରୋଗୀ, ରାଜା, ରଙ୍କ-ସମସ୍ତଙ୍କ ପାଇଁ ଏକ, ଅଭିନ୍ନ ।

(୩)

ଶୁକ୍ଳପକ୍ଷ, ଚାନ୍ଦିନୀ ରାତି । ଗାଁର ଚାଳମଥାନ ଡେଇଁ ଧବଳ, ଶୀତଳ ଜହ୍ନ ଆଲୁଅ ଢାଙ୍କିଦିଏ ସବୁରି ଅଗଣା । ପିଠଉ ପରି ଜହ୍ନ ପଡ଼େ । ଆଈମା, ବୁଢ଼ୀଅପା ଖୋଲି ଦିଅନ୍ତି ଗପମୁଣି । ପିଲାଏ ଘେରି ବସନ୍ତି । ଅବଲୋକରା କଥାରୁ ବୁଢ଼ୀ ଅସୁରୁଣୀ କାହାଣୀ ଯାଏ ଲମ୍ବିଯାଏ । କୋଳପିଲାକୁ ଧରି କାହାରି ଅପା ଜହ୍ନ ମାମୁକୁ ଡାକି ଟୀକା ଦେଇ କହେ, "ଆ ଜହ୍ନମାମୁ- ଆ ଆ / ମୋ ଧନମଣି ମୁଣ୍ଡରେ ଟୀକା ଦେଇ ଯା" । ଛୋଟ ପିଲାଙ୍କୁ କିମିଆପରି ଲାଗେ । ଯାହା ଅଗଣାରେ ଦେଖିବ ଗୋଟାଏ ଜହ୍ନ । ଜହ୍ନ ମାମୁ କ'ଣ ସବୁଠି ? ଏମିତି ନାନା ଭାବ ଭାବାନ୍ତର ସୃଷ୍ଟିକରେ, ପିଲାଏ ଭ୍ରମରେ ପଡ଼ନ୍ତି- ସେଇ ପଲ୍ଲୀ ସଂଜର କଥାମାନ ପରଶି ଦେଇଛନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର 'ଶୈଶବ ସ୍ମୃତି'ରେ ।

ଜହ୍ନ ଧଉଳା ରାତି । ଗାଁ ମାଇପେମାନେ ନଈବାଲିରେ ଯାଇ ବସନ୍ତି । ଚଉଦିଗ ଧବଳ ଜୋଛନାରେ ଚହଟି ଯାଏ । ଗୋଟାଏ ଉନ୍ମତ୍ତ ଧବଳ ଗଜରା ତରଙ୍ଗ ବୈତରଣୀରେ ମାତି ଉଠୁଥାଏ ଦିଗ ଦିଗନ୍ତ ପ୍ଲାବିତ କରି । ଏକ ଅଜଣା ଅପାର ଆନନ୍ଦ, ଉଲ୍ଲାସକୁ ସମ୍ଭାଳି ନପାରି ନଈବାଲିଟା ଫାଟି ପଡି ଉଠୁଛି ଯେପରି । ଆକାଶରେ ରୂପାଥାଳିପରି ଜହ୍ନଟିଏ । ପାଣିଭିତରେ ଉକୁଟି ଉଠୁଛି ମାଳକୁ ମାଳ ଜହ୍ନର ଛାଇ । ଧୀରି ପବନରେ ଚହଲି ଉଠୁଥିବା ଟିକି ଲହରୀରେ ଜହ୍ନର ହାଟବସି ଯାଉଛି ସତେକି ! ଲକ୍ଷ୍ମୀକାନ୍ତଙ୍କ ପାଇଁ ଏ ସ୍ମୃତି ଚିର ଅଭୁଲା ।

ମେଲା ଛାତ ଉପରେ ସପ ବିଛାଇ ମାମା କଣ୍ଢି ଝୁଲା ଧରି ବସନ୍ତି । ତାଙ୍କ ପାଖରେ ଶୋଇଥାନ୍ତି ଲକ୍ଷ୍ମୀକାନ୍ତ । ମାମା ରାଜପୁଅ, ରାଜାଝିଅ କାହାଣୀ କହନ୍ତି । ମଖାମଖି କଥା । ଟୁଆଁ ଟୁଇଁ କଥା । ଏ କଥାକୁ ସେ ନିତିପ୍ରତି ଶୁଣନ୍ତି; କିନ୍ତୁ ଚିଟା ଲାଗେନି । ଆଖିକୁ ନିଦ ଘାରେ । ମାମା ପିଠି ଥାପୁଡେଇ ଦିଅନ୍ତି । କହନ୍ତି- ବାଇ ଚଢ଼େଇରେ ବାଇ ଚଢ଼େଇ, ବାଇୟା ଯାଇଛି ଗାଈ ଚରେଇ ।" ଆଖିକୁ ନିଦ ଆସିଥାଏ । ଏଣିକି ଖାଲି ସ୍ୱପ୍ନ ଉପରେ ସ୍ୱପ୍ନ; ସବୁ ସେଇ କାହାଣୀକୁ ନେଇ । ଏବେ ବି ମନେପଡେ, "ପକ୍ଷୀରାଜ ଘୋଡା

ଉପରେ ଚଢ଼ି ଶୂନ୍ୟରେ ଧାଇଁଛି ମୁଁ କୁଆଡକୁ କେଜାଣି ଲକ୍ଷ୍ୟହୀନ ହୋଇ । କେବେ କେବେ ଭାଲୁର ବାଳୁଆ ଗୋଡ ଦିହରେ ଲାଗି ଯିବାରୁ ଚିହିଁକି ଉଠେ । କେବେ ବାଘମାମୁ କାଞ୍ଜିପାଣି ହାଣ୍ଡିଟା କରଡି ଭୂଇଁରେ ପଡି ଓଦା ସରସର ହୋଇ ଦଉଡେ । ଡରରେ ମାମାଙ୍କୁ କୁଣ୍ଢାଇ ପକାଏ । ମାମା ଆଉଁସି ଦେଇ କହନ୍ତି- ଇହିଁ- ମୁତିଛୁ ।" କଥାଟି ସପନରେ ; ହେଲେ ଏଥିରେ ଭରି ରହିଛି ନିଛକ ବାସ୍ତବତା । ଏଇ ଶୈଶବ ସ୍ମୃତି ଖୁବ୍ ମନଛୁଆଁ ।

ରାତି ପାହିଯାଏ, ସକାଳହୁଏ । ସୂର୍ଯ୍ୟ ଉଠେ, ଫୁଲ ଫୁଟେ, କୋଇଲି ଡାକେ । ବୈତରଣୀ ପୁଣି ପ୍ରସାରିଦିଏ ତା'ର ରଙ୍ଗ ପଣତ । ଇଚ୍ଛାଥିଲେ ବି ଯାଇ ହୁଏନା । ଏବେ ଅବଧାନଙ୍କ ପାଖରେ ଖଡି ଛୁଇଁବା କଥା । ମାମୁ ଘର ଚଉପାଢୀର ବୁଢ଼ା ଅବଧାନ । ଧାଡିକି ଧାଡି ପିଲା ବସି ଭୂଇଁ ଉପରେ ଖଡିପାଠ ଲେଖନ୍ତି । ପଣକିଆ ଡାକନ୍ତି । ଅବଧାନ ମଝିରେ ବସିଥାନ୍ତି ବେତ ଖଣ୍ଡିଏ ଧରି । ଏ ବେତର ନାଁ 'ଜ୍ଞାନ ଦାସ' । ଜ୍ଞାନ ଦାସଙ୍କୁ ସମସ୍ତିଙ୍କର ଯମ ପରି ଡର । ପିଲାଏ ପହିଲି ପହିଲି ଖଡ଼ିରେ ମୁଣ୍ଡୁଳା କାଟନ୍ତି । ଭଲ ଲୁଗାପିନ୍ଧି, ନଡ଼ିଆ ଧରି ମାଗଣ କରି ଯାଆନ୍ତି । ବଡ଼ ପିଲାଏ ଗାଆନ୍ତି 'କଳାକଳେବର କହ୍ନାଇ', ' ବନ୍ଦଇ ହରି ଦେବ ମୁରାରି' । ସାନମାନେ ପାଳି ଧରନ୍ତି । ସଞ୍ଜବେଳେ ପୁଣି ଘଲେ ଚଉପାଢୀ ରେ ଅବଧାନଙ୍କ ଚଟଶାଳୀ । ତେଲ ଦୀପଟିଏ ଜଳୁଥାଏ । ସକାଳ ସଞ୍ଜେ ଅବଧାନଙ୍କ ଆକଟ । ସ୍ୱାଧୀନତା ଉପରେ ଏ ଜୁଲମକୁ ପିଲାଏ ସହି ନେଉଥିଲେ କେବଳ ବେତମାଡ ଡରରେ । ଅବଧାନଙ୍କ ପାଟି ଶୁଣିଲେ କୋଚିଆଟିଏ ପରି ବାହାରି ଆସନ୍ତି । ଅବଧାନେ କେତେ ପ୍ରକାର ଗୀତ ଶିଖାନ୍ତି- ନଦୀ କିନାରେ ବଗଲା ବଇଠେ / ଚୁନ୍ ଚୁନ୍ ମଛଲି ଖାୟ / ଶିଙ୍ଗି ମଛଲି କଣ୍ଟାମାରେ / ତଡ଼ପ୍ ତଡ଼ପ୍ ଜୀ ଯାଏ" । ସବୁଠୁଁ ମଜା କଥା ହେଲା ଅବଧାନେ ବେଳେବେଳେ ଜ୍ଞାନ ଦାସକୁ ଭୂଇଁରେ କଚାଡି କହନ୍ତି- 'ପଢ଼ିଲେ ଶୁଣିଲେ ଦୁଧ ଭାତ / ନ ପଢ଼ିଲେ ଠେଙ୍ଗା ନାତ ।" ଏହା ଥିଲା ପ୍ରାକ୍ ସ୍ୱାଧୀନତା କାଳୀନ; ଆପତତଃ ଉନବିଂଶ ଶତାବ୍ଦୀର ଚଟଶାଳୀ ପାଠ ପଢ଼ା ବ୍ୟବସ୍ଥା ।

ଘରିଆଡେ ଆନନ୍ଦ ଉଲ୍ଲାସ । ଗାଁ ଗାଁରେ ପର୍ବପର୍ବାଣି ପାଳିତ ହୁଏ । ଫଗୁଣରେ ରାଧା ଗୋବିନ୍ଦଙ୍କ ଦୋଳଯାତ । ଧାଡି ଧାଡି ଠାକୁର ଶୋଭା ଯାତ୍ରାରେ ବାହାରନ୍ତି । ରଙ୍ଗ ଅବିର ପିଚିକାରୀ ଖେଳ । କେଳା କେଲୁଣୀ, ଷଣ୍ଢନାଚ, ମହୁରୀ, ବାଜା ସହିତ ଝାଞ୍ଜ ମୃଦଙ୍ଗ ବାଜେ । ଚଉପିଠିରେ ଠାକୁର ବସନ୍ତି । ଦାସ, ଚଉଧୁରୀ, ମଠ ପୀଠକୁ ନେଇ ଦୋଳ ଯାତ୍ରାର ନାମକରଣ, ବିଶେଷକରି ଡାକ ମେଳଣରେ ଢେର ଦେଖଣାହାରୀ ଜୁଣ୍ଟ ହୁଅନ୍ତି । ନାଲି ରଙ୍ଗ ବୋଳି ହୋଇ ଲୋକେ ନାଚନ୍ତି । ଅବିର ଉଠି ଘରିଆଡ ହୋଇଯାଏ

ଲାଲ ଲାଲ । ପିଲାଏ ନିଜ ଭିତରେ ଲେସାଲେସି ହୁଅନ୍ତି । ଏତିକିରେ ତାଙ୍କର ଅପାର ଆନନ୍ଦ । ରଜରେ ଝିଅ ଦୋଳି ଖେଳନ୍ତି । ତାଳ ଚଟୁଆର ଚପଲ ମାତନ୍ତି । ମିଣିପେ ପଶା ଖେଳନ୍ତି । ଟୋକାଏ ତାସ, ବାଗୁଡି ଖେଳରେ ମାତନ୍ତି । ସାନସାନ ପିଲା ରଜ ପୋଡପିଠା ଖାଇ, ନୂଆ ଲୁଗା ପିନ୍ଧି ଗାଁ ବୁଲି ଖୁସି ହୁଅନ୍ତି । କୁଆଁର ପୁନେଇଁ ଆସେ । ଝିଏ କଇଁ ଫୁଲରେ  ଘର ତୋଳନ୍ତି । ଗୀତ ଗାଆନ୍ତି । ପୁନେଇଁ ଦିନ ପିଲାମାନେ ଚନ୍ଦନପାଟୀ ନାଇ, ନୂଆ ଲୁଗା ପିନ୍ଧି ଚାନ୍ଦ ଖାଆନ୍ତି । ଏଇ ସବୁ ପୁନେଇଁ ପରବରେ ଗାଁ ଜୀବନ ହୋଇଯାଏ ରସସିକ୍ତ । ଅଛି ସେଇ ଗାଁ,ନାହିଁ ରଜମଉଜ, ଦୋଳ ଆନନ୍ଦ ଅବା କୁଆଁର ପୁନେଇଁର ଖୁସି; ସବୁ ପାଳିତ ହେଉଛି ପାଳନ ପାଇଁ ଯାହା ! ଏବେ ଗାଁ ଖାଁ ଖାଁ । ପରିଣତ ବୟସରେ ଖୋଜିଲେ ଆଉ କି ମିଳିବ ସେଇ ରସରସିଆ ମନଭୁଲା ପିଲାଦିନ କଥା ।

ଜୀବନ ଯାତନାରେ ଚିର ପୀଡିତ ଲକ୍ଷ୍ମୀକାନ୍ତ ବଞ୍ଚିଛନ୍ତି ଶୈଶବ ସ୍ମୃତିକୁ ସଙ୍ଗାଳି କରି । ସେଇ କଥାକୁ ପାଠକ ଆଗରେ ଥୋଇଛନ୍ତି, "ମନେ ପଡେ ମୋର - ଯେଉଁଦିନ ଖଡଖଡି (ପାଲିଙ୍କି)ରେ ପୂରାଇ ଏକୁଟିଆ ଠାକୁର ଦେଖିବା ଛଳନାରେ ମୋତେ ଘେନି ଆସିଲେ, ସେ ଦିନ ମୋ ଜୀବନର ଏକ ସନ୍ଧିକ୍ଷଣ । ଅଭିଶପ୍ତ ଦେବ ଶିଶୁ ଭଳି ସ୍ୱର୍ଗ ଭ୍ରଷ୍ଟ ହୋଇ ଭୂତଳରେ ପତିତ ହେଲି ।" ଏବେ ଅଛି ମାମୁଘର, ନାହାନ୍ତି ମାମୁ ମାଇଁ, ତା' ସାଙ୍ଗରେ ସୁନାର ଶିକୁଳି ଛିଣ୍ଡି ଯାଇଛି ତାଙ୍କ ଅନ୍ତରର ଷଡ୍‌ଜ ତାରକୁ ବିକଳ ବେସୁର କରି । ଏ ଜୀବନରେ ପୁଣ୍ୟ ତୀର୍ଥ ଦର୍ଶନର ଆଶା ତୁଟି ଯାଇଛି ନିଃଶେଷ ହୋଇ । ପଡିରହିଛି ଖାଲି ଗୋଟାଏ ଭସ୍ମସାର ଧୂପ-ଦାନୀର ମୃଦୁ ଗନ୍ଧ-ଗୋଟାଏ ଦର ଲିଭା ରଙ୍ଗିନ ଛବିର ଫିକାଳିଆ ପଟ୍ଟଭୂମି- ଗୋଟାଏ ବେତାର ବୀଣାର ଅବଲୀୟମାନ ମୂର୍ଚ୍ଛନା ।" ସ୍ରଷ୍ଟାଙ୍କ ଆଖି ଛଳ ଛଳ ହୋଇଯାଉଛି । ବୈତରଣୀ ପାଇଁ ତାଙ୍କର ସେଇ ଦରଦଭରା ଶେଷ କଥା ଦି'ପଦ, "ବିଦାୟ ନେଉଛି ବୈତରଣୀ, ତୁ ତୋ'ର ଚିର ତରୁଣ ଲାବଣ୍ୟମୟୀ ମୂର୍ତ୍ତିରେ ସେହିପରି ବିରାଜୁଥିବୁ । ମୋହରି ଭଳି କେତେ ହତଭାଗ୍ୟ ତୋ'ର ଶାନ୍ତିମୟ କୋଳରେ ଆଶ୍ରୟ ନେଇ ଅନ୍ତରର ଜ୍ୱଳା ଲିଭାଇବେ । ତୋ'ର ଯେଉଁ ଛବିଳ ରୂପଶିରୀକୁ ଚାହିଁ ଚାହିଁ ଦିନେ ମୁଁ ନେତ୍ର ଫିଟାଇଥିଲି, ସେହି ରଙ୍ଗ ପସରା ସତେ ତୁ ମେଲେଇ ଦେବୁକି ବୈତରଣୀ, ଯାହାର ଶାନ୍ତ, ଶୀତଳ ଲାବଣ୍ୟକୁ ଆଖି ପତାରେ ମାଖି ମାଖି ମୁଁ ଆଖି  ବୁଜିବି ।"

ରହସ୍ୟମୟୀ ପ୍ରକୃତିରାଣୀ । ତା' ଶୋଭାପସରାର ଅମୂଲ୍ୟ ନିଧି ନଦୀଟିଏ । କେତେ ବିଚିତ୍ର ବର୍ଣ୍ଣା ସେ । ତା'ର ହସ -ସରସ ରୂପ ଲାବଣ୍ୟ ଶିଶୁଟି ଉପରେ ଗଭୀର

ରେଖାପାତ କରେ । ତାକୁ ଦେଖିଦେଖି ଅନ୍ତରରେ ସୃଷ୍ଟିହୁଏ ଉଦ୍‌ବେଳନ, ଅପୂର୍ବ-ଶିହରଣ । ସେହି ଶିହରିତ ମୁହୂର୍ତ୍ତମାନ ଆନମନାକରି ଦିଏ ଶିଶୁଟିକୁ ଉତ୍ତର ଜୀବନରେ । ଯୌବନରେ ସେ ଶୁଣେ ନଦୀର ସାମ ସଂଗୀତ, ବାର୍ଦ୍ଧକ୍ୟରେ ଖୋଜେ ନଈବାଲିରେ ଘଖଣ୍ଡେ ଶେଯ, ସେଇଠି ଜଳିବ ତା' 'ଜୁଇ' ।

ସମୁଦ୍ର, ହ୍ରଦକୁ ଆପଣେଇ ନେଇଥିବା ସାରସ୍ୱତ ସାଧକମାନେ ସୃଷ୍ଟିକରନ୍ତି କାଳଜୟୀ ରଚନାମାନ । କବି ଗୋଦାବରୀଶ ମିଶ୍ର, ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତି, ଗୋପୀନାଥ ମହାନ୍ତି, କାହ୍ନୁ ଚରଣ ମହାନ୍ତି; ସେହିପରି ଆହୁରି ଅନେକ ହୋଇ ଯାଇଛନ୍ତି କାଳଜୟୀ । ଏ ପରିପ୍ରେକ୍ଷୀରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଏକ ଅନୁପମ ନିଦର୍ଶନ, ସତରେ ସେହିଁ ଅନନ୍ୟ ।



# କୈଶୋର ଯେବେ ପାଲଟେ ସ୍ୱପ୍ନ

(୧)

ଅଣଲେଉଟା କାଳ । ବଡ଼ ବେଗି ବେଗି ପାଦ ପକାଇ ଚାଲେ । ଚାହୁଁ ଚାହୁଁ ଶେଷ ହୋଇଯାଏ ଶୈଶବ; କିନ୍ତୁ ସେଇ ଚିନ୍ତାହୀନ, ଦକହୀନ, ଧୂଳିଖେଳର ସ୍ମୃତି ଏବେ କୈଶୋର ସ୍ୱପ୍ନଟିଏ । ମନେ ପଡ଼େ ପିଲାଦିନ, ଧୂଳିଖେଳ, ଗାଁ ଦାଣ୍ଡ, ନଈନାଳ, ବିଲ, ଧାନକ୍ଷେତ, ତାର ଖୁଣ୍ଟ, ଶଙ୍ଖଚିଲ, କାଣ୍ଡିବଗ, ନଈକୂଳିଆ ଉଇଁ ଆସୁଥିବା ସୂର୍ଯ୍ୟ, ହସି ହସି ମା' କୋଳକୁ ଡେଇଁ ପଡୁଥିବା ଅପରାହ୍ନ ସୂର୍ଯ୍ୟଙ୍କର ଶୋଭା ସୁଷମା- ଏମିତି ଅନେକ ଦୃଶ୍ୟ । ହୃଦୟ ଏକ ଅଜ୍ଞାତ ଆନନ୍ଦରେ ଅଧୀର ହୁଏ । ସେଇ ସ୍ମୃତି ତମାମ ଜୀବନକୁ ଅଥୟ କରିଦିଏ । ଲକ୍ଷ୍ମୀକାନ୍ତଙ୍କ  ସେଇ ଅଭୁଲା ସ୍ମୃତି । ତାଙ୍କ ଶୈଶବ କଟିଛି ମାମୁ ଘର କଣ୍ଟାପାରି ଗାଁରେ । ବୈତରଣୀର ଛଇ ଛବିଲି ରୂପଲାବଣ୍ୟ ଗଭୀର ରେଖାପାତ କରିଥିଲା ତାଙ୍କ ଶିଶୁ ପ୍ରାଣରେ । କିନ୍ତୁ କୈଶୋର କଟିଲା ବାପାଙ୍କ ମାମୁଘର ଗାଁ ବାଲେଶ୍ୱରରେ । ଅନୁଭୂତି ସଂପୂର୍ଣ୍ଣ ଭିନ୍ନ । ଦୂରିଆ ମଫସଲ ପାଣି ପବନ, ପରିବେଶରେ ଆତ୍ମହରା ଲକ୍ଷ୍ମୀକାନ୍ତଙ୍କର ଏବେ ସହରୀଜୀବନ । ଦୁଇଟି ପରସ୍ପର ସମାନ୍ତର, ପ୍ରଥମଟି ମଧୁମାସର ମଧୁମହକ, ଦ୍ୱିତୀୟଟି ଝାଇଁମରା ତାତିରେ ମଳିନ, ପାଣ୍ଡୁର, ବିଷଣ୍ଣ ମଧ୍ୟାହ୍ନ । ଏ ଦୁଇଟିର ଫେଣ୍ଟା ଫେଣ୍ଟି ରୂପଚିତ୍ର 'କୈଶୋର ସ୍ୱପ୍ନ' ।

ମଫସଲର ବିଭୋରପଣ ସହରରେ ଦୁଷ୍ପ୍ରାପ୍ୟ । ଉଭୟ ଭିତରେ କାହିଁ କେତେ ଫାଙ୍କ, କେତେ ତଫାତ । ବାଲେଶ୍ୱର ସହର, ବଡ଼ ବଡ଼ କୋଠା, ଗାଡି ଘୋଡା, ଗହଳି ଚହଳି ଭୁଲେଇ ଦିଏ କିଶୋର ମନ । ସହରକୁ ସଞ୍ଜ ଆସେ । ପଶ୍ଚିମ ଆକାଶର ପ୍ରଦୋଷ ଶୋଭା ମନ ପକେଇ ଦିଏ ବୈତରଣୀ ଆରପାରିର ସାୟଂକାଳୀନ ଦୃଶ୍ୟକୁ । ସହରୀ

ଜୀବନରେ ମନ ମାନେନା, ଭାରି ବିକଳ ଲାଗେ । ସତରେ, ସେ ସରଳତା ଗଲା କୁଆଡେ ? କି ଆନନ୍ଦର ଦିନ ଥିଲା ସେ ! ସହରର ଡେଙ୍ଗା କୋଠାର ମଥାନ ଆରପଟେ ସବୁଜ ଶାଗୁଆ ଧାନକ୍ଷେତ ନିଜକୁ ଯେମିତି ହଜେଇ ଦେଇଛି ! ଶିରି ତୁଟି ଯାଇଛି ପ୍ରକୃତି ରାଣୀଙ୍କ ମୁହଁରୁ !

ବାପାଙ୍କ ମାମୁଘର ବଡ଼ଲୋକ । ଘରର ଉପଯୋଗୀ ବାରପୂଜା, ତେର ପାର୍ବଣ ବର୍ଷଯାକ ଚାଲେ । ହୋରି, ଚନ୍ଦନ ଯାତ୍ରା ଭାରି ପ୍ରସିଦ୍ଧ । ଯାକଯମକରେ ପାଳିତ ହୁଏ । ଚାଲେ ଯାତ୍ରା, ସୁଆଙ୍ଗ । ରାତି ରାତି ଉଜାଗରରେ କଟେ । ଦୁଆରୀ ସାଙ୍ଗରେ ହସି ହସି ଗଡିଯାନ୍ତି କିଶୋର ଲକ୍ଷ୍ମୀକାନ୍ତ । ଧ୍ରୁବ, ପ୍ରହ୍ଲାଦଙ୍କ ସହିତରେ ଅଶ୍ରୁବର୍ଷଣ କରନ୍ତି । ନଳରାଜା, ହରିଶ୍ଚନ୍ଦ୍ରଙ୍କ ପରି ସର୍ବସ୍ୱ ତ୍ୟାଗୀଙ୍କ ଲାଗି ସହାନୁଭୂତିରେ ଛାତିଟା ତାଙ୍କର ଫାଟିଯାଏ । ମନେ ହୁଏ ଅଭିନେତାମାନେ ସେହି ସେହି ବ୍ୟକ୍ତି । ଲକ୍ଷ୍ମୀକାନ୍ତଙ୍କର ଗୋଟାପଣ ଇଚ୍ଛା ଯାତ୍ରାବାଲାଟିଏ ହୋଇଯାନ୍ତେ ! ଯାତ୍ରାଦିନ କେତେ କ'ଣ ସଜବାଜ, ମଉଜ ମଜଲିସ୍ । ବଂଗଳା ଯାତ୍ରା ହେଲେ ମଞ୍ଚ ସଜା ସ୍ୱତନ୍ତ୍ର; ଝାଡ, ଲଣ୍ଠନ, ଗ୍ୟାସ ଆଦି ପ୍ରଚୁର ପରିମାଣରେ ସଜା ଯାଏ । ପାନ, ଅତର ଗୋଲାପ ବଣ୍ଟାଯାଏ । ଯାତ୍ରାରେ ଭୀମ, ଦୁଃଶାସନଙ୍କର ଗର୍ଜନ ତର୍ଜନ, ; କର୍ଣ୍ଣ, ବୃଷକେତୁଙ୍କର କରୁଣ, ନିଖୁଣ ଅଭିନୟ ଦର୍ଶକଙ୍କ ମନଜିଣି ଯାଏ । ବଡ଼ ବଡ଼ ବାବୁ ଭାୟାମାନେ ଅବିର ଖେଳନ୍ତି; ରଙ୍ଗପିଚିକାରୀ ମରାମରି ହୁଅନ୍ତି । ପିଲାଙ୍କ ମନ ଛଟ ପଟ ହୁଏ; କିଏ ରଙ୍ଗ ବୋଳି ଦିଅନ୍ତାକି ? କେହି କେହି ଲୁଚି ଲୁଚି ବିଛଣାଉପରୁ ମେଣ୍ଟାଏ ଅବିର ଗୋଟେଇ ମୁଣ୍ଡରେ ବୋଳି ହୁଅନ୍ତି, ରଙ୍ଗ ପାଣିରୁ ଚଳାଏ ଲେଖାଁ ଜାମାରେ ଲଗେଇ ଦିଅନ୍ତି । ଏ କାର୍ଯ୍ୟଟି ଚାଲେ ଖୁବ୍ ସନ୍ତର୍ପଣରେ, ସମସ୍ତଙ୍କ ଅଲକ୍ଷ୍ୟରେ, କାଳେ କିଏ ଦେଖି ପକାଇବ । ସେଦିନ ଏବେ କୁଆଡ଼େ ଗଲାଣି ।

ଆସେ ଚନ୍ଦନ ଯାତ୍ରା, ବଇଶାଖାର ଗୁମସୁମ ତାତି । ୧୫ଦିନ ଆଗରୁ ପ୍ରସ୍ତୁତି ଚାଲେ, ରାତିରେ ନିଦ ହୁଏନି ପିଲାଙ୍କୁ । ଆସେ ସେଇ ମୁହୂର୍ତଟି । ଠାକୁର ବାହାରନ୍ତି । କେତେ ପ୍ରକାର ବାଜା ବାଜେ, ଷଣ୍ଢ ଲଢ଼େଇ, ଅସୁରନାଟ, ବାବାଜୀ ସୁଆଙ୍ଗ, ଲୋକେ ମଜା ନିଅନ୍ତି । ବାଜା ଶବଦରେ ଛାତି ଫୁଲି ଉଠେ, ଦେହ ଶିତେଇ ଯାଏ, ରୋମାଞ୍ଚରେ ଲୋମ ଟାଙ୍କୁରି ଉଠେ । ପିଲାଙ୍କର କିନ୍ତୁ ସ୍ୱତନ୍ତ୍ର ଆନନ୍ଦ । ପରିବାର, ବଂଧୁ ବାନ୍ଧବଙ୍କ ଠାରୁ ଯାତ୍ରା ଖରଚ ମିଳିଥାଏ । ଦିନକ ପାଇଁ ସେମାନେ ହୋଇଯାନ୍ତି ବଡ଼ ଲୋକ । ଚାଲେ

ଖିଆ ପିଆ, କିଣାକିଣି । କେଉଁ ଦୋକାନରୁ ଚେନାଚୁର୍, ଅନ୍ୟଠାରୁ ଛେନାବଡ଼ା, ଆଉ କୋଉଠୁ ପିଂପରମେଣ୍ଟ, ନାଲି ମିଠାଇ, କେଉଁ ଦୋକାନରୁ ଘୋଡାବାଳରେ ତିଆରି ବେଙ୍ଗ, କେଉଁଠୁ ରସ ଫେଁ କାଳି, ମାଟି ଖଞ୍ଜଣି (ତାରା) କିଣା ଚାଲେ । ଏମିତି ଛୋଟ ବଡ଼ ଚିଜ, ଖାଇବା ଦରବ ପିଲେ କିଣନ୍ତି । ଏବେ ଗାଁ'ଗଣ୍ଡା, ସହର ବଜାରରେ ଯାତ୍ରା ସଂସ୍କୃତି କ୍ରମେ ଫିକା ପଡିଲାଣି । ନାହିଁ ଆଗକାଳିଆ ସାଜସଜା । ସବୁ ପୂଜା ପାର୍ବଣରେ କାହିଁ କେତେ ଆଧୁନିକ ସାଜ ସରଞ୍ଜାମ, ଆଲୋକ ସଜ୍ଜା, ବେଣ୍ଡପାର୍ଟି- ଏସବୁ ମନୋରଞ୍ଜନ କରେ; ମାତ୍ର ଚିତ୍ତ ବିନୋଦନ କରିପାରେନି । କ୍ରମେ ବୟସ ବଢ଼ି ବଢ଼ି ଯାଉଛି; କିନ୍ତୁ ସେ ଉଲ୍ଲାସର ଚନ୍ଦ୍ର- ଉଦିଆ ଲିଭିଯାଉଚି- ଚିର ଦିନ ପାଇଁ ।

'କୈଶୋର ସ୍ୱପ୍ନ'ରୁ ପାଠକେ ମୋଟା ମୋଟି ଭାବେ ସ୍ୱାଧୀନତା ପୂର୍ବବର୍ତ୍ତୀ ଶିକ୍ଷା ବ୍ୟବସ୍ଥା ସଂପର୍କିତ ସ୍ଥୁଳ ଚିତ୍ରଟିଏ ପାଇଥାଆନ୍ତି । ପ୍ରାଥମିକ ଶିକ୍ଷାର ଆରମ୍ଭ ଚାଟଶାଳୀରୁ । ସକାଳ ଓଳି ସିଲଟ ଲେଖା, ବେଳଓଳି ବହିପଢ଼ା । ଚାଟମାନେ ଐ-କାର ପଠନ କରନ୍ତି ସ୍ୱରଧରି । ଚାଟଶାଳୀ ପରେ ନାମ ଲେଖା ହୁଏ ବଡ଼ ସ୍କୁଲରେ, ସ୍କୁଲ ଅନେକ ବାଟ । ଗାଡ଼ି, ଘୋଡ଼ାର ବ୍ୟବସ୍ଥା ନଥିଲା । ଯେଝା ଯେଝା ସୁବିଧାରେ ପିଲାମାନେ ଯାଆନ୍ତି । ଫେରନ୍ତି ଅଞ୍ଚଳଯାକ ପିଲା ଏକ ସାଥିରେ । ଧାଡ଼ି ଧାଡ଼ି ଲାଗିଯାଏ ସଡ଼କ ଏପାଖରୁ ସେପାଖ ଯାଏ । ଆଗେ ଆଗେ ଉଚ୍ଚ ଶ୍ରେଣୀର ପିଲା, ପଛରେ ସାନ ସାନ ମାନେ, ବଡ଼ମାନଙ୍କ ଆଗରେ ଏମାନଙ୍କ ପାଇଁ ହସିବା ବାରଣ । ବଡ଼ମାନଙ୍କ ପ୍ରତି ସାନଙ୍କର ଭକ୍ତିଥାଏ । ସେମାନେ ମଧ୍ୟ ସାନଙ୍କୁ ଶ୍ରଦ୍ଧା କରନ୍ତି, ଉପଦେଶ ଦିଅନ୍ତି । କେଉଁ ସାନ ଦୁଷ୍ଟାମି କଲେ କାନ ମୋଡ଼ା ଅବା ଠୋ ଠୋ ଦି ଚାପୁଡା କେହି ହେଲେ ଲଗାଇ ଦିଅନ୍ତି । ସ୍ୱାଧୀନତା, ସମଭାବର ଦୁନିଆ ଏବେ । ଏପରି କଥା ଅନେକ ବିଶ୍ୱାସ କରି ପାରିବେନି, ହସିବେ; ତଥାପି ଏହା ସତ୍ୟ ।

ଖରାଦିନେ ସ୍କୁଲ ସକାଳୁଆ ଚାଲେ । ଅନ୍ଧାର ଥାଉଁ ଥାଉଁ ସ୍କୁଲକୁ ପିଲାମାନେ ଦୌଡ଼ନ୍ତି । ଯିବା ରାସ୍ତାରେ ଆଖିରେ ପଡ଼େ ପ୍ରତ୍ୟୁଷକାଳୀନ ମନଲୋଭା ଦୃଶ୍ୟ । ବାଟରେ କରଞ୍ଜ ଫୁଲ ବିଛଣା ପଡିଥାଏ । ମହ ମହ ଗନ୍ଧରେ ସୁବାସିତ ଚୌହଦୀ । ରାସ୍ତା କଡେକଡେ ଧାଡି ଧାଡ଼ି ଆମ୍ବ ଗଛ । ପେଣ୍ଡା ପେଣ୍ଡା ଆମ୍ବ କଶି ଓହଳି ପଡିଥାଏ । ପିଲାମାନେ ଛତାବେଣ୍ଟରେ ଆମ୍ବ ପାରି ନେବାନ୍ତି । ଠାଁ ଠାଁ କୃଷ୍ଣଚୂଡ଼ାର ଚହଟା ହସ ।

କେବେ ଫୁଲ ତୋଳିବାକୁ ମନ ବଳେ, ଗଛ ଚଢ଼ି ଅଣ୍ଟିଏ ଆମ୍ବ ତୋଳିବାକୁ ମନ ଡାକେ । ହାତ ପାଏନି, ଗଛଚଢ଼ା ସଭିଁଙ୍କୁ ଜଣାନାହିଁ । ବଡ଼ ହେବା ପାଇଁ ବ୍ୟାକୁଳତା ବଢ଼େ, ବୟସ୍କ ବ୍ୟକ୍ତିଙ୍କୁ ଦେଖିଲେ ପିଲା ହିଂସା କରନ୍ତି । ଧାରଣାଟି ଥିଲା ଏହିପରି; ବୟସ ଯେତେ ବଢ଼ିବ ଖାତିର ତେତେ ବଢ଼ିବ । ବଡ଼ ହେଲାରୁ ଭାବନା ବଦଳିଯାଏ । ବରଷେ ପାରିହେଲା ବେଳକୁ ମନ ବିକଳ ହୁଏ; ଶେଷଦିନ ନିକଟେଇ ଆସିଲା ପରି ଲାଗେ । ସଂସାରରେ ମରିବା ମିଆଦରୁ ବରଷଟିଏ କମିଲା ଯେମିତି ! ଶୈଶବରେ ଯେତିକି ବୟସ ଆଗେଇବାକୁ ମନ ହୁଏ, ଏବେ ମନ ଡାକେ ବୟସ ସେତିକି ପଛେଇ ଯାଆନ୍ତା କି ? କିଶୋର ମନ କେଉଁ ବୁଝେନି ଯେ, ବଡ଼ହେଲେ କେତେ ବିପଦ, କେତେ ହଇରାଣ, ଏତେ ଦାୟିତ୍ୱ, ଏତେ ହଟହଟା-ଏହା ସୃଷ୍ଟିର ଅପରିବର୍ତ୍ତନୀୟ ଧାରା, ଚିରନ୍ତନ ସତ୍ୟଟିଏ ମଧ୍ୟ ।

ବର୍ଷାକାଳରେ କିଶୋର ମାନଙ୍କର ନୂଆ ଆନନ୍ଦ, ସ୍ୱତନ୍ତ୍ର ଏ ସ୍ୱାଦ । ଆସେ ବରଷାରାଣୀ । ବରିଷି ଚାଲେ । ଆହୁରି ବରଷିବା ପାଇଁ ମନେ ମନେ ପିଲା ଠାକୁରଙ୍କୁ ଡାକନ୍ତି । ଏହା ପଛରେ ଥାଏ ଛୁଟିଟିଏ ମିଳିଯିବାର ଆଶା । ପ୍ରକୃତି ବଡ଼ ବିଚିତ୍ର, ନିୟତି ମଧ୍ୟ କଠୋର । କେହି ବୁଝନ୍ତି ପ୍ରାଣୀର ମନ କଥା । ତାଙ୍କ ଇଙ୍ଗିତରେ ସବୁ ଚାଲେ । ସକାଳୁ ମେଘ ବର୍ଷିଯାଏ, ଦଶଟା ବେଳକୁ ଅଟକିଯାଏ । ପିଲାଙ୍କ ମନ ଖଟା ହୋଇଯାଏ । ତଥାପି ଦୁଇ/ଚାରିଥର ସୁଯୋଗ ମିଳେ । ବରକୋଳିଆ ମେଘ ଟୋପା ବିଛାଡି ହେଇଯାଏ, ମନଭରି ପିଲାମାନେ ତିନ୍ତା ତିନ୍ତି ହୁଅନ୍ତି । ଛତା ବୁଜିଦେଇ ଭିଜନ୍ତି । କିଏ ସଡକ କଡ ବଡ଼ନାଳରୁ ପାଣି ଆଣି ପୂରା ଓଦା ସରସର ହୋଇଯାଏ । କେହି ଯଦି ଓଦା ନହେଲା, ଅନ୍ୟମାନେ ତାକୁ ପାଣି ପଡୁଥିବା ଛାତ ନାଳୁଆ ତଳକୁ ଠେଲି ଦିଅନ୍ତି । ସ୍କୁଲରେ ପହଁଞ୍ଚିଲା ବେଳକୁ ସମସ୍ତେ ପୂରା ଭିଜି ଯାଇଥାନ୍ତି । ପିଲାଙ୍କୁ ଓଦାପଟା ହୋଇଥିବା ଦେଖି ମାଷ୍ଟ୍ରେ ଛୁଟି କରିଦିଅନ୍ତି । ସ୍କୁଲର କଠୋର ଅନୁଶାସନରୁ ଦିନଟିଏ ମୁକ୍ତି ମିଳେ । ଏ ପ୍ରକାର କୈଶୋର ସ୍ମୃତିକୁ ଭୁଲି ହୁଏନି ଜୀବନ ସାରା ।

ପିଲାଙ୍କ ବସିବାପାଇଁ ଶ୍ରେଣୀ କୋଠରୀରେ ଡେସ୍କ, ବେଞ୍ଚମାନ ଥାଏ । ଡେସ୍କ ଉପରେ ପିଲେ ନିଜର ନାଁ ଲେଖି ଦିଅନ୍ତି । ଲକ୍ଷ୍ମୀକାନ୍ତ ଏଦିଗରେ ଖୁବ୍ ଆଗରେ । ତରାସଛୁରୀରେ ଡେସ୍କ ବେଞ୍ଚରେ ନିଜ ନାଁକୁ ଲେଖନ୍ତି । ଗୋଟେ ଅବା ଦୁଇଟିରେ ନୁହେଁ,

ଅନେକଟିରେ ତାଙ୍କର ଏଇ କଳାକାରିଗରୀ ନମୁନା ରହିଛି । ପିଲାମାନଙ୍କ ମଧ୍ୟରୁ କେହି କେହି ପାଠରେ ମନ ଦିଅନ୍ତିନି । କାଗଜର ବାକ୍ସ, ଦୁଆତ, ଡଙ୍ଗା, ଟୋପି ଇତ୍ୟାଦି ତିଆରିରେ ମଜି ରହିଥାନ୍ତି । ମାଷ୍ଟ୍ରଙ୍କ ବେତ ମାଡ ଭୟରେ, ଅଭିବାବଙ୍କ ତାଡ଼ନାରେ ଯାହା ଟିକେ ପାଠ ପଢ଼ା ।  ଶନିବାର ଦିନ ହାପ୍‌ଛୁଟି, ବଡ଼ ମଜାର ଦିନ । ସେ ଦିନ କି ଉତ୍ସାହ ! କି ଆନନ୍ଦ ! ତହିଁ ଆର ଦିନ ରବିବାର, ମନ  ଏକଦମ୍ ନିଦକ, ଖୋଲାସା । ଶନିବାର ଓପରଓଳି କଟେ ବାଗୁଡି ଖେଳ, ମାର୍ବଲ୍ ଗୋଲି ଖେଳ ଇତ୍ୟାଦିରେ । ରାତିରେ ଭଲ ନିଦ ହୁଏ । ରବିବାର ଦିନ ନାନାପ୍ରକାର ଖେଳ, କସରତ, ସ୍ଫୂର୍ତ୍ତି ଫରୁଆତ । ଭବିଷ୍ୟତ କର୍ମମୟ ଜୀବନରେ ମଧ୍ୟ ଛୁଟି ମିଳୁଛି; କିନ୍ତୁ ନାହିଁ କୈଶୋରର ଆନନ୍ଦ, ଅମିର ମିଜାଜ୍ । ଲକ୍ଷ୍ମୀକାନ୍ତଙ୍କ ମନ ବିକଳ ହୁଏ । ମନ କଥାକୁ ସେ ବଖାଣନ୍ତି "ସେ କାଳର ଅପବ୍ୟବହାର, ଅତ୍ୟାଚାର ଫଳ ଆଜି ହାତେ ହାତେ ଭୋଗିଲିଣି । ଭାବିଲେ ଆଉ କ'ଣ ହେବ ! ଯେଉଁ କରଣୀ କରିଯାଇଛି, ତା'ର ପରିଣାମ ବ୍ୟର୍ଥ ହେବାର ନୁହେଁ । ଆଜି ତାହା ଲେଉଟିବାର ପନ୍ଥା ନାହିଁ । କେବଳ ସେହି ସ୍ୱପ୍ନ ଅତୀତର ମଧୁର ସ୍ମୃତି ହିଁ ବର୍ତ୍ତମାନର ଅବସାଦ ଚିତ୍ତ ବିନୋଦନ, ହତାଶାର ଆଶ୍ୱାସନା, ପ୍ରାଣର ସାନ୍ତ୍ୱନା ।"

କୈଶୋର ଆଉ ଗୋଟେ ସ୍ମୃତି । ଶହ ଶହ ସଂଖ୍ୟାରେ ପଣ୍ଡିମା ଜଗନ୍ନାଥ ପ୍ରେମୀ ସଦାବ୍ରତ ପାଇଁ ଆସନ୍ତି, ହାତରେ ବରତାପତ୍ର ଛତା, ତୁଣ୍ଡରେ ଜଗନ୍ନାଥଙ୍କ ଜୟଜୟକାର, ଗାଉଥାନ୍ତି "ଜଗର୍ନ୍ନାଥିଆ ଭୈୟା" । ମଝିରେ ମଝିରେ ଶୁଭୁଥାଏ "ଜଗନ୍ନାଥ ସ୍ୱାମୀ କି ଜୟ" । ସେ ଗୀତ ଏବେ ନିରବି ଗଲାଣି, ଆଉ ଶୁଣିବାକୁ ପାଉନାହାନ୍ତି ଲେଖକ । କିନ୍ତୁ ସେଇ ସ୍ୱର କାନ ଭିତରେ ଗୁଣୁ ଗୁଣୁ କରିଉଠେ ବୋରାବରି  । ଏମିତି କୈଶରର ସ୍ମୃତି ପରେ ସ୍ମୃତି; ଏବେ ସବୁ ସୁନାସପନ ପାଲଟିଲେଣି, ବାହୁଡିଲେଣି ରୁପା ଶଗଡିରେ ବିସ୍ମୃତିର ଅନ୍ଧାର ଆଡକୁ । ଏଣେ ବାର୍ଦ୍ଧକ୍ୟର ତାଡନା, କେବଳ କୈଶୋରସ୍ୱପ୍ନ ସୌଦାଗରଟିଏ ହୋଇ ଜୀଇଁବାକୁ ପଡ଼େ ଯାହା ।

(୨)

କୈଶୋର, କେବେ ମିଠା ତ କେବେ ଖଟା । ଗୁରୁଜନଙ୍କ ତାଡ଼ନା, ମାଷ୍ଟ୍ରଙ୍କ ମାଡ଼ ଭାରି କଷ୍ଟ । ପିତାମହ, ପିତାମହୀଙ୍କ ଅନାବିଳ ସ୍ନେହ; ଭୁଲି ହୁଏନା ସାରାଜୀବନ । ଅତୀତ ଥିଲା ମଧୁର; ଏବେ ବାର୍ଦ୍ଧକ୍ୟ ଯନ୍ତ୍ରଣାର କାରା କୋଠରୀ । ଏମିତି କେତେ

କେତେ ଅନୁଭୂତିକୁ କଳାତ୍ମକ ରୂପ ଦିଅନ୍ତି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର । କୈଶୋର ଜୀବନର ଦୋଛକି, ପଛରେ ଶୈଶବ, ବାଲ୍ୟକାଳ; ଆଗରେ ଲମ୍ବା ଜୀବନ । କୈଶୋର ବଡ଼ ମହତ୍ତ୍ୱପୂର୍ଣ୍ଣ । ପିଲାଟି ଖୋଜେ ସ୍ନେହ, ଆଦର ଯତ୍ନ; ସର୍ବୋପରି ଆପଣାର ପଣ । ଏଥିରେ ଊଣା ହେଲେ ଭବିଷ୍ୟତ ଜୀବନ କଣ୍ଟକିତ ହୁଏ । ଶିଶୁର ସାମଗ୍ରିକ ବିକାଶ ଘଟେନି । ପାରିବାରିକ ସ୍ନେହ, ସଦିଚ୍ଛା ପିଲାଟି ତ ପାଏ; ମାତ୍ର ସ୍କୁଲକୁ ଗଲେ ସାନସାନ ପଢୁଆମାନେ ହନ୍ତସନ୍ତ ହୁଅନ୍ତି । ସ୍କୁଲରେ ଦଣ୍ଡ ମାଧ୍ୟମରେ ଶିକ୍ଷାଦାନ । ଏହା ପଛରେ ଅମୂଳକ ଧାରଣାଟିଏ । ବିନା ଦଣ୍ଡରେ ପାଠ ହୁଏନି, ପିଲା ଅବାଟରେ ଯାଆନ୍ତି, ଅମଣିଷ ହୋଇଯାଆନ୍ତି । ଏପ୍ରକାର ଚିନ୍ତନ ଥିଲା ପ୍ରାକ୍ ସ୍ୱାଧୀନତା କାଳରେ । ଏହାର ଶିକାର ହେଲେ ଛାତ୍ର/ଛାତ୍ରୀମାନେ । ସେମାନଙ୍କ ସାମାଜିକ ବିକାଶ ହେଲାନି; ବରଂ ଯନ୍ତ୍ରଣା, ହତାଶା, ଅନ୍ତର୍ଦାହ ତାଙ୍କ କୋମଳ ମନକୁ ମଳିନ କଲା । ଏଇ କଥାକୁ ସେମାନେ ବୁଝନ୍ତି ଉତ୍ତର ଜୀବନରେ, ସେତେ ବେଳକୁ ନେଡ଼ିଗୁଡ଼ କହୁଣୀରେ । ଏମିତି ଏକ ବାସ୍ତବ ସତ୍ୟକୁ ଲକ୍ଷ୍ମୀକାନ୍ତ ପରିଶିଛନ୍ତି 'କୈଶୋର ସ୍ୱପ୍ନ'ରେ ।

ଏବେ ଶିକ୍ଷାନୁଷ୍ଠାନ ଦଣ୍ଡମୁକ୍ତ ଅଞ୍ଚଳ । ଛାତ୍ରଙ୍କୁ ପ୍ରବର୍ତ୍ତିତ କରି ଶିକ୍ଷାଦାନ; ଏଣୁ ପିଲାଟିର ମାନସିକ, ବୌଦ୍ଧିକ ବିକାଶ ସମ୍ଭାବନା ଉଜ୍ଜ୍ୱଳ । ଛାତ୍ର/ଛାତ୍ରୀଙ୍କ ଆଗ୍ରହ, ଶାରୀରିକ, ମାନସିକ ବ୍ୟବସ୍ଥା, ବିଶେଷ ପରାଦର୍ଶିତା ବା ଯୋଗ୍ୟତା- ସ୍ୱାଧୀନତା ପୂର୍ବ ଶିକ୍ଷା ବ୍ୟବସ୍ଥାରେ ଏ ଗୁଡିକ ଉପରେ ଗୁରୁତ୍ୱ ନଥିଲା । ସବୁ ମାଷ୍ଟ୍ରଙ୍କ ହାତରେ ଛଡି (ବେତ) । ମାଡ଼ଖାଇବା ଛୋଟ ପିଲାଙ୍କର ଅମଳ । ଶ୍ରେଣୀ କକ୍ଷରେ ଯେଉଁ ମାଷ୍ଟ୍ରେ ଅଧିକ ଛଡି ବ୍ୟବହାର କରନ୍ତି; ସେମାନଙ୍କର ସେତିକି ବାହାଦୁରୀ । ଅଧିକ ବେତ ଆବଶ୍ୟକ ହେଲେ ତାକୁ ଯୋଗାନ୍ତି ବଡ଼ ଚାଟ । ସେମାନଙ୍କ ପଟେକରେ ଗୋଟେ ଗୋଟେ କଳମତରାସ । ପାଠପଢ଼ା ସହ ଛଡି କଟା ତାଙ୍କର ଏକ ପ୍ରକାର ଦୈନନ୍ଦିନ କାମ । ସାନ ଚାଟ ମାନେ ନିତି ପିଟା ଖାଆନ୍ତି । ଘର ମାଷ୍ଟ୍ର ଯାହା ମାରିବା ମାରନ୍ତି; ସ୍କୁଲରେ ମାଷ୍ଟ୍ରଙ୍କଠାରୁ ନିସ୍ତାର ନାହିଁ । ଅଭିଭାବକମାନେ କହିଦିଅନ୍ତି, ଆଖି ଦିଟା ଛାଡି ବହେ ଲେଖେଁ ବାଡେଇବାକୁ । ଏଣୁ ମାଷ୍ଟ୍ରେ ନିଦକ, ଚାଲେ ପିଲାଙ୍କ ଉପରେ ଅତ୍ୟାଚାର । କାନମୋଡା, ଗାଲଚପୁଡା, ବାଳ ଟଣା, ମୁଣ୍ଡ ଠୁଙ୍କା, ବେଞ୍ଚ ଛିଡା, ଚେୟାର ହେବା, ହେଟାଗୁଡି ପଡିବା- ଏତ ମାମୁଲି କଥା । ମଝିରେ ମଝିରେ ଗୁରୁଜନ, ବାପା, ଦାଦା ବିନା କାରଣରେ

ମାରନ୍ତି । ଏଥିରେ ଅନ୍ତର୍ଭୁକ୍ତ ବିଧା, ଗୋଇଠା, ବେତ, ଯୋତା, ଯେତେବେଳେ ଯାହା ମନହେଲା । ଅଳ୍ପ ବହୁତ ସଂପର୍କଥିବା ଅବା ଅଧିକ ଚିହ୍ନା ପରିଚେ ଥିବା ଆଖପାଖ ଲୋକେ ମଧ୍ୟ ମୁରବି ପଣିଆ ଦେଖାନ୍ତି । ବାଟରେ ଘାଟରେ ଚଡ଼ ଘୁସୁଡେ ବସାଇ ଦିଅନ୍ତି । ଏ ପ୍ରକାର ଗୁରୁଗ୍ଣ ମତିଗତି ପିଲାଙ୍କୁ ମଣିଷ କରିବା ପରିବର୍ତ୍ତେ ଅଳକ୍ଷ୍ୟରେ ସେମାନଙ୍କ ଭବିଷ୍ୟତକୁ ନଷ୍ଟକରିଥାଏ । ଲକ୍ଷ୍ମୀକାନ୍ତ ତାଙ୍କ ସ୍କୁଲ ପଢ଼ାବେଳର ଅନୁଭୂତି ବଖାଣନ୍ତି, " ମନେ ହେଉଛି ମୋ ପିଲା ବୟସରେ ମୋ ଘେରି ପିଠି ଗୋଟାଏ ଆତଙ୍କର ଆବରଣ ସର୍ବଦା ଘେରି ରହିଥିଲା । ଏହି ତ୍ରାସ ଓ ଭୀତିର କାରାକକ୍ଷ ମଧ୍ୟରେ ନିୟତ ଥାଇ ବୋଧିହୁଏ ହୃଦୟଟା କେତେ ସଂକୁଚିତ ହୋଇ ଯାଇଥିବ ! ପଥର ଘସା ପଡି ମନଟା ସହଜ ଭାବରେ ଗଢ଼ି ଉଠିବାକୁ କେତେ ବାଧା, କେତେ ପ୍ରତିବଂଧକର ସମ୍ମୁଖୀନ ହୋଇନଥିବ !" ଆଦର ସ୍ନେହ ପାଇଲେ ପିଲେ ମନମୋଟିଆ ହୋଇଯିବେ- ଏଣୁ ତାଙ୍କୁ ଜାଣିଶୁଣି ଗାଳି ଗୁଲଜ କରିବା, ତୁଚ୍ଛ ତାଚ୍ଛଲ୍ୟ କରିବା, ନିରୁତ୍ସାହିତ କରିବା ଥିଲା ମୁରବିତ୍ୱର ଲକ୍ଷଣ- ମୁରବିପଣିଆର ରୀତି ।

କୋମଳ ମତି ବାଳକ, କଞ୍ଚା ବୟସ । ଆପଣାର ସୁଖ ଦୁଃଖ ବାଣ୍ଟିବା ପାଇଁ ସାଥୀଟିଏ ଏକାନ୍ତ ଲୋଡା । ଭଲ ବଂଧୁଟିଏ ମିଳିଲେ କୈଶୋର ହସିଉଠେ । ଏପ୍ରକାର ଚିରନ୍ତନ ସତ୍ୟଟିକୁ ଲେଖକ ଉପସ୍ଥାପନ କରିଛନ୍ତି । ତାଙ୍କୁ ମିଳିଲା ମନଲାଖି ସଖାଟେ; କୃଷ୍ଣଭାଇ, ଭାରି ସୁଧାର, ଭଦ୍ର । ଦୁହେଁ ଏକ ଆତ୍ମା, ଗୋଟିଏ ବୃନ୍ତର ଦୁଇଟି ଫୁଲ । ଦୁହିଁଙ୍କ ମଧ୍ୟରେ କ୍ଷୀର ନୀର ସଂପର୍କ । ବିଦ୍ୟାଳୟରେ ମାଷ୍ଟ୍ରଙ୍କ ତାଡ଼ନା ସେମାନଙ୍କ ଚିତ୍ତବୃତ୍ତି ବିକାଶର ବାଧକଥିଲା, ମନ ଖୋଜୁଥିଲା ମୁକ୍ତ ବାତାୟନ, ବନ୍ଧନହୀନ ପରିବେଶ, ଟିକେ ସ୍ୱାଧୀନତା । ଏବେ ସୁବର୍ଣ୍ଣ ସୁଯୋଗ; ଏକାଠି ପୋଖରୀରେ ପହଁରା । ସଡ଼କ ନୟନଯୋଡିରେ ମାଛଧରା, ଖେଳକୁଦ ! ଦିନ କଟିଲା ଆନନ୍ଦରେ । ବଂଧୁ ଜଣକ ଶୟନର ଦୋସର, ଖେଳର ସହଚର । ନିୟତି ଦାଉ ସାଧିଲା । ଏବେ ଦି'ଜଣଙ୍କ ଜୀବନର ଗତିପଥ ଅଲଗା । ଭାରୀ ନିସଙ୍ଗ ଲାଗେ । ଲେଖକ ଝୁରି ହୁଅନ୍ତି, କହି ଦିଅନ୍ତି ମନ କଥାକୁ, "ଯଦି ଆମ୍ଭେ ଦୁହେଁ ପରସ୍ପର ବେକ ଧରାଧରି ହୋଇ ସନ୍ତରଣ କରୁଁ କରୁଁ ପୁଷ୍କରିଣୀର ଅତଳ ଗର୍ଭରେ ଅନନ୍ତ ବିଶ୍ରାମ ଲଭିଥାନ୍ତୁ, ତାହା କେତେ ଆନନ୍ଦର, କେତେ ଆରାମର ଶୟନ ହୋଇଥାନ୍ତା ! ଦୁନିଆର ଏତେ ଗଞ୍ଜଣା ସହିବାକୁ ପଡନ୍ତା କାହିଁକି ?"

ଶୈଶବରେ ପିତା ମାତାଙ୍କ ତାଡନା । କିନ୍ତୁ ପିତାମହ, ପିତାମହୀଙ୍କ ଅନାବିଳ ସ୍ନେହ ପିଲାକୁ ଆପଣେଇ ନିଏ । ଲେଖକଙ୍କର ମାମୁଘର ଅଜା, ଆଈ, କେତେ ଭଲ ସେମାନେ । ବଡ଼ଲୋକର ଆବରଣ ତଳେ ଲୁଚିଥିଲା ସ୍ନେହ, ଭଲପାଇବା ମହୋଦଧିଟିଏ, ତାହା ଅନେକକାଳ ଶୀତଳ କରିଥିଲା ତାଙ୍କ ସନ୍ତପ୍ତ ପ୍ରାଣକୁ । ଅଜା ବାଟକାଟିଲେ; ଶ୍ମଶାନରେ ଜଳୁଛି ଜୁଇ । ବ୍ୟଥାତୁର ଲକ୍ଷ୍ମୀକାନ୍ତଙ୍କର ଅଜସ୍ର ଭାବନା, ହୃଦୟରେ କୋହର ଉଦ୍‌ବେଳନ । ଲେଖିଲେ ଦରଦଭରା, କୋହ ମିଶା କଥା ଦିପଦ, "ସଂସାରୀ ହୋଇ ଦେବତା ଓ ଋଷିତ୍ୱର ଆଦର୍ଶ ଦେଖାଇଥିବା ତୁମର ସେଦିନର ଗୋଟିଏ ଗୋଟିଏ କଥା ଆଜି ସୁଦ୍ଧା ମୋ ସ୍ମୃତି ହୋଇ ଚିତ୍ତ ଅଧୀର କରି ଦେଉଛି, ହୃଦୟର ଜୀର୍ଣ୍ଣ ତନ୍ତ୍ରୀରେ ପୁରୁଣା ପାଶୋରା ରାଗିଣୀ ପରି ଝଙ୍କାରି ଉଠୁଛି । ତୁମ୍ଭର ଉପଦେଶ, ତୁମ୍ଭର କାର୍ଯ୍ୟକଳାପ, ତୁମ୍ଭର ଆଦର୍ଶ, ସେ ବୟସରେ ମୁଁ ଯେଉଁପରି ଭାବରେ ଦେଖିଥିଲି ବା ବୁଝିଥିଲି, ତାହାର ପ୍ରଭାବରେ, ତଦନୁସାରେ ମୋର ପ୍ରାଣର ବୃତ୍ତିସବୁ ନିୟନ୍ତ୍ରିତ ହୋଇ ଯାଇଛି । ଜୀବନର ଗତିପଥ ନିର୍ଦ୍ଦିଷ୍ଟ ହୋଇ ଯାଇଛି ପରା ।" ଆଜି ସବୁ ସ୍ୱପ୍ନପରି ଲାଗେ; ତଥାପି ଚିର ଅଭୁଲା ରହିଯାଏ ସେଇ ସ୍ମୃତିଟି ।

ମାମୁଘର ଆଈମା । ଦୟା ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ । ବାଳକ ଲକ୍ଷ୍ମୀକାନ୍ତଙ୍କ ପାଇଁ କେତେ ଅସୁବିଧା, କଷ୍ଟ, ଗଞ୍ଜଣା ସହିଛନ୍ତି । ମାଷ୍ଟ୍ରଙ୍କ ମାଡ ଭୟରେ ସ୍କୁଲକୁ ନଯିବାକୁ ଅଝଟକଲେ, ପେଖନା କାଢ଼ିଲେ, ବାହାନା କଲେ ସେ ସମ୍ଭାଳି ନିଅନ୍ତି । ସେ ଏବେ ଆଉ ନାହାନ୍ତି । ତଥାପି ଆଈଙ୍କର ସ୍ମୃତି ତାଙ୍କୁ ଛଟପଟ କରୁଛି । ତାଙ୍କରି ଉଦ୍ଦେଶ୍ୟରେ ସେ ବାଢ଼ିଛନ୍ତି ଭକ୍ତି ନୈବେଦ୍ୟ, " ଯାଅ ସତି, ସଂସାରରେ ଯେଉଁ ସୁଖ ଦିନେ ହେଲେ ତୁମ୍ଭ ଭାଗ୍ୟରେ ଘଟିନାହିଁ, ଏବେ ସେହି ସ୍ୱର୍ଗ ରାଜ୍ୟରେ ତାହା ଶତ ଗୁଣରେ ଭୋଗ କରିବ । ତୁମ୍ଭ ପାଇଁ ସେଠାରେ ଗୋଟିଏ ଅନୁତପ୍ତ ଦେବପ୍ରାଣ ବରମାଲ୍ୟ ଧରି ଅପେକ୍ଷା କରିଛି । କିନ୍ତୁ ବଡ଼ ଆଶା ରହିଗଲା- ଥରେ ମାତ୍ର ଶେଷ ଦେଖା କରି ପାରିଲିନାହିଁ ।" ପରିବାର, ବଂଧୁ ବାନ୍ଧବ-ଏମିତି ଅନେକ ଆସନ୍ତି ଜୀବନ ପରିସରକୁ; ମାତ୍ର କେଇ ଜଣଙ୍କ ଆଦରପଣ ଜୀବନକୁ ନିୟନ୍ତ୍ରିତ କରେ, ସତ୍‌ମାର୍ଗ ଦେଖାଏ, ଭଲ ମଣିଷଟେ ହେବାର ପ୍ରେରଣା ଯୋଗାଏ । ସେମାନଙ୍କ ମଧ୍ୟରେ ଲେଖକଙ୍କ 'ଦାଦା' ଅନ୍ୟତମ ।

କାଳ ବଡ଼ ନିର୍ମମ, ବାଛି ବାଛି ଆପଣେଇ ନିଏ ନିର୍ଲୋଭ, ଉଦାରଚରିମାନଙ୍କୁ । ଏଭଳି ନଜିର ସମାଜରେ ଅଭାବ ନାହିଁ । ସେମିତି ଥିଲେ ଲକ୍ଷ୍ମୀକାନ୍ତଙ୍କ ମାମୁଘର ଦାଦା, ଦୀର୍ଘ ଶରୀର, ରାଜୋଚିତ ବେଶଭୂଷା, ଦେଖିଲେ ବାଳକ ହୃଦୟ ପ୍ରଶଂସା, ବିସ୍ମୟରେ ପୂର୍ଣ୍ଣ ହୋଇଯାଏ । ତାଙ୍କର ଗମ୍ଭୀର ଉତ୍ସାହପୂର୍ଣ୍ଣ ବାକ୍ୟ ଜୀବନର ନୈରାଶ୍ୟ, ଦୁର୍ବଳତାକୁ ଦୂର କରେ, ଶାନ୍ତି ସଂଚାର କରେ । ସଂସାରର ନୀଚ ବ୍ୟବହାର, କୂଟକପଟ, ଆବର୍ଜନା ଠାରୁ ସେ ଥିଲେ ବହୁଦୂରରେ । ଏଭଳି ବ୍ୟକ୍ତିତ୍ୱ ଏବେ ଦୁର୍ଲଭ । ସେହି ଦେବୋପମ ମଣିଷ ଅକାଳରେ ଚାଲିଗଲେ । ଲକ୍ଷ୍ମୀକାନ୍ତଙ୍କ ବାଲେଶ୍ୱର ସୁନହଟ ମାମୁଁ ଘର ହୋଇଗଲା ଅନ୍ଧକାର, ଏବେ ତାଙ୍କ ପାଇଁ ତାହା ପ୍ରେତପୁରୀ । ବଡ଼ ଆତୁରରେ ସେ ଲେଖିଛନ୍ତି, "ମୋତେ ଆଜି ସେହି ମଧୁମୟ କୈଶୋରର ବିଳାସବାଟିକା, ଜନମାନବ ବିହୀନ, ଶୂନ୍ୟ ଶ୍ମଶାନ ତୁଲ୍ୟ ପ୍ରତୀୟମାନ ହୋଇଛି । ଆଉ ଏ ଜୀବନରେ ସେ ପୁଣ୍ୟକ୍ଷେତ୍ର ଦର୍ଶନ କରିବି ନାହିଁ । କ୍ରୂର କାଳ ସମସ୍ତ ଆକର୍ଷଣ ଛଡାଇ ନେଲାଣି । ଏବେ ଖାଲି ସେହି ସୁଦୂର ଅତୀତର ସୁଧାମୟ ସ୍ୱପ୍ନକୁ ଜୀବନର ସଙ୍ଗୀକରି ପ୍ରତ୍ୟେକ ତପ୍ତ ନିଃଶ୍ୱାସ ସଙ୍ଗରେ ଟୋପାଏଁ ଲେଖାଏଁ ଅଶ୍ରୁ ବିସର୍ଜନ କରୁଥିବି, ଏତିକି ହିଁ ମୋର ସମ୍ବଳ ।"

ଦିନଯାଏ ଚିହ୍ନ ରହେ । ଏମିତି ଚାଲିଗଲା ଶୈଶବ, ବାଲ୍ୟକାଳ; କୈଶୋର ରହିଲାଣି ଦୂରେ ବହୁ ଦୂରେ । ଏହା ହିଁ ନିୟତିର ନିୟମ, ସମୟର ଗତିଶୀଳତା । ପ୍ରତିଟି ଘଟଣା, ପ୍ରତ୍ୟେକ ମୁହୂର୍ତ୍ତ, ସମସ୍ତ ସୁଖ, ଦୁଃଖ, ଆନନ୍ଦ, ନିରାନନ୍ଦ- ଏଠି କିଛି ସ୍ଥାୟୀ ନୁହେଁ । ଶୈଶବ ଥିଲା ଚିର ଅବୋଧ, ବାଲ୍ୟକାଳ ଚଳ ଚଞ୍ଚଳ, କୈଶୋର ଗଢ଼ି ହେବାର ପ୍ରକୃଷ୍ଟ ସମୟ । ଏବେ ଏସବୁ ଅତୀତ, ଆଗକୁ ଯୌବନର ଉଦ୍ଦାମତା, ତାରୁଣ୍ୟର ସ୍ୱପ୍ନ । ଏମାନେ ହାତ ଠାରିଲେଣି, ଇଙ୍ଗିତ ଦେଲେଣି ବୟସକୁ ଆଗେଇ ଯିବାକୁ । ଏଇତ ଜୀବନ । କେବେ ଜୁଆର କେବେ ଭଟ୍ଟା । ତଥାପି ମଣିଷ ଜୀଇଁଛି ଶୈଶବ, ବାଲ୍ୟ, କୈଶର ସ୍ୱପ୍ନକୁ ନେଇ । ସେଇ ସ୍ୱପ୍ନମାନେ ଏବେ ଅସ୍ପଷ୍ଟ; ତଥାପି କ'ଣ କମ୍ ରୋମାଞ୍ଚକର !



# ଯୌବନ, କେବେ ହସ ତ କେବେ ବିଷ

ଯୌବନ ଆସେ ଥରୁଟିଏ, ବଦଳେଇଦିଏ ଜୀବନର ନକ୍ସା । ତା'ର ଅମାପ ପ୍ରେରଣା; ଏଣିକି ଜୀବ ବାଧା, ବନ୍ଧନ କିଛି ମାନେନି । ବୟସର ରଙ୍ଗବୋଳି ହୋଇଯାଏ । ସୌନ୍ଦର୍ଯ୍ୟ ଉକୁଟି ଉଠେ । ଶାରୀରିକ, ମାନସିକ ଦ୍ରୁତ ବିକାଶ ଘଟେ । ଯୌବନ ହିଁ ଗୋଟେ ଆବେଗ, ଗୋଟେ ଦର୍ପ, ଗୋଟେ ସ୍ପର୍ଦ୍ଧା ।  ଏହା ଆଶାର ଉଦ୍‌ବେଳନ ସୃଷ୍ଟି କରେ । ସ୍ନାୟୁ ହୁଏ ନବଉତ୍ସାହରେ ସ୍ପନ୍ଦିତ, ଧମନୀରେ ତପ୍ତ ରକ୍ତର ପ୍ରବାହ । ଏକ ଅଜ୍ଞେୟ ପ୍ରେରଣାରେ ଚିତ୍ତ ଅଧୀର, ଅଥୟ, ଅଶାନ୍ତ ହୋଇଉଠେ । ଜୀବନ ବହିର ବର୍ଣ୍ଣିଳ ଫର୍ଦ୍ଦମାନ ଯୋଡି ହୋଇଯାଏ ଯୌବନ ପୁସ୍ତକରେ ।  କେତେବେଳେ ତାହା ସ୍ପଷ୍ଟ ତ କେତେବେଳେ ଝାପ୍‌ସା, ଅସ୍ପଷ୍ଟ । କାହା ଜୀବନରେ ଯୌବନ ମଧୁବରଷେ, ସୁଖ, ଶାନ୍ତି ଅଜାଡି ଦିଏ; ଆଉ କାହା କପାଳରେ ଆଣେ ହତାଶା, ବ୍ୟର୍ଥତା, ଅସହାୟତା, ଅସରା ଅସରା ଲୁହ ଆଉ କୋହ । ଏମିତି କାନ୍ଦୁରା  ଯୌବନ ଥିଲା ପ୍ରଥିତଯଶା ସାହିତ୍ୟିକ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର  । ତାଙ୍କ ବିକଳ ଅନୁଭୂତିକୁ  ସେ ବାଢି ଦେଇଛନ୍ତି ପାଠକ ଆଗରେ ଏକ ମାର୍ମିକ ଭଙ୍ଗୀରେ, କଳାତ୍ମକ  ଶୈଳୀରେ । ଲେଖାଟିର  ଶୀର୍ଷକ "ଯୌବନ ପଥେ ।

ଦିନ କାହାରି ସମାନ ଯାଏନି, ଆଜି ପାଲିଙ୍କି ଉପରେ ପାଟଛତା ତ କାଲି ବେଢି ଉପରେ କୋରଡା । ତାହା ଅକ୍ଷରେ ଅକ୍ଷରେ ପ୍ରମାଣିତ ଲକ୍ଷ୍ମୀକାନ୍ତଙ୍କ ଜୀବନରେ  । ଲେଖକଙ୍କ ଶୈଶବ, ବାଲ୍ୟ, କୈଶୋର ଥିଲା ଅତୀବ ସୁଖଦ । ଜମିଦାର ପରିବାର, ଅମାପ ଧନ ସଂପତ୍ତି । ରୂପରେ ଗୁଣରେ ସେ ପରିପୂର୍ଣ୍ଣ । ସୁଠାମ ଅଙ୍ଗ ସୌଷ୍ଠଵ, ଉଚ୍ଚ ଶିକ୍ଷିତ ।  ରେଭେନ୍‌ସା କଲେଜରୁ ଲକ୍ଷ୍ମୀକାନ୍ତ ବି.ଏ ପାଶ୍ କରିଥିଲେ  (୧୯୧୩) । ଜୀବନସାଥୀ ତାଙ୍କର ଲବଙ୍ଗଲତା ଦେବୀ, ବାଲେଶ୍ୱର ସୁନହଟ ଜମିଦାର ଲାଲମୋହନ

ଦାସଙ୍କ ଅଲିଅଳୀ କନ୍ୟା । ଏତଦ୍‌ଭିନ୍ନ ନୃତ୍ୟ, ଗୀତ, ସାହିତ୍ୟ; ପ୍ରତିଟିରେ ତାଙ୍କର ଅପୂର୍ବ ଦକ୍ଷତା । ୧୯୧୨ ମସିହାରେ ସେ ପ୍ରଥମ ପୁତ୍ର ସନ୍ତାନର ଜନକ ହେଲେ । ସେହି ନବଜାତ ଶିଶୁଟି ହେଲେ ଓଡିଶାର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ, ସଚ୍ଚୋଟ ଦେଶଭକ୍ତ, ଉତ୍ସର୍ଗୀକୃତ ମୁକ୍ତି ସଂଗ୍ରାମୀ, ନିଷ୍କଳଙ୍କ ରାଜନୀତିଜ୍ଞ ନିତ୍ୟାନନ୍ଦ ମହାପାତ୍ର । ବିଧାତା ଧନ-ଜନ-ଗୋପ ଲକ୍ଷ୍ମୀରେ ପରିପୂର୍ଣ୍ଣ କରିଦେଲେ ଲକ୍ଷ୍ମୀକାନ୍ତଙ୍କ ସଂସାର । ହଠାତ୍ ପୀଡିତ ହେଲେ ଭୀଷଣ ଜ୍ୱରରେ, ଉପଚାରରେ ଉତ୍ତାପ ହ୍ରାସ ପାଇଲା; କିନ୍ତୁ ଦେହରେ ଦେଖାଦେଲା କୁଷ୍ଠ ବ୍ୟାଧିର ଲକ୍ଷଣ । ହାକିମି, ଆୟୁର୍ବେଦୀୟ, ତାନ୍ତ୍ରିକ, ତୁଟୁକାତୁଟୁକି; ଯିଏ ଯାହା କହିଲେ କରାଗଲା; କିନ୍ତୁ ସବୁ ନିଷ୍ଫଳ । ଶେଷରେ ଜଣେ ବାବାଜୀଙ୍କ ପରାମର୍ଶରେ ଶଙ୍ଖୁଆ ବିଷ ପାନ କରାଗଲା । ତାହାର ବିଷମ ଫଳ ହେଲା, ଶରୀର ହେଲା ଜୀର୍ଣ୍ଣ ଶୀର୍ଣ୍ଣ । ବିକଳାଙ୍ଗ ଅଙ୍ଗ ପ୍ରତ୍ୟଙ୍ଗ । କଲିକତାର ବିଶିଷ୍ଟ କୁଷ୍ଠରୋଗ ବିଶେଷଜ୍ଞ ଲିଓନାର୍ଡ ରୋଗର୍‌ସଙ୍କ ଚିକିତ୍ସାଧୀନ ହୋଇ ମଧ୍ୟ ବିଶେଷ ସୁଫଳ ମିଳିଲାନି । ଯୌବନର ସମସ୍ତ ଆଶା, ଆକାଂକ୍ଷା ଚୂର୍ଣ୍ଣ ହେଲା । ଏବେ ଲକ୍ଷ୍ମୀକାନ୍ତ କକ୍ଷଚ୍ୟୁତ ଉଲ୍‌କା, ଅଭିଶପ୍ତ ଗନ୍ଧର୍ବ, ତଥାପି ସେ ହିମ୍ମତ୍ ହାରି ନାହାନ୍ତି । ଏକ ବେଦନା କ୍ଲିଷ୍ଟ ଜୀବନର ଅମୃତମୟ ଫଳ ହିଁ ତାଙ୍କର ରାଶିରାଶି ସାହିତ୍ୟକୃତି । 'ଯୌବନ ପଥେ ' ରଚନା କଲାବେଳେ ସ୍ରଷ୍ଟା ପାଲଟି ଯାଇଛନ୍ତି ଦାର୍ଶନିକଟିଏ; କାମର ଚୌହଦି ଅତିକ୍ରମ କରି ଖୋଜିଛନ୍ତି ପ୍ରେମର ଶାଶ୍ୱତ ମାର୍ଗକୁ ; ଅନୁସନ୍ଧାନ କରିଛନ୍ତି ପରମ ପୁରୁଷଙ୍କୁ । ରହସ୍ୟମୟଙ୍କ ବଳୟ ଭେଦ କରି ଭସାଇ ଦେଇଛନ୍ତି ଆପଣା ଜୀବନ ତରୀ ଭବ ସାଗରରେ । ନାହିଁ ଦର, ଶଙ୍କା, ଆଶଙ୍କା । ଲେଖକ ବର୍ଣ୍ଣନା କରିଛନ୍ତି ଆପଣା ହୃଦୟର ସେଇ କଥା ଦିପଦକୁ, "ସମ୍ମୁଖେ ଅଶାନ୍ତ ପୃଥିବୀ । ଅପାର କଳ୍ପନା, ଅସୀମ ଆକାଂକ୍ଷା, ଅଶାନ୍ତ ଆବେଗ ଘେନି ଆଜି ମୋର ଏ ଅନିର୍ଦ୍ଦିଷ୍ଟ ଅଭିଯାନ, ଅନ୍ତରରେ ଉଦ୍ଦାମ ଉତ୍ସାହ, ନୟନରେ ଅନଳର ଦୀପ୍ତି, ଚରଣରେ ଅକ୍ଳାନ୍ତ ଶକ୍ତି, ମୋତେ ଆକର୍ଷଣ କରି ନେଉଛି କେଉଁ ଅଜଣା ପରପାରିକୁ, ଆଉ ନାହିଁ ତା'ର ଥଳକୂଳ । କିନ୍ତୁ ମୁଁ ଚାଲିଛି - ଚାଲିଛି-ଚାଲିଛି, ସେ ଚାଲିବାର ଅନ୍ତ ନାହିଁ- ବିରାମ ନାହିଁ - ଅବକାଶ ନାହିଁ ।" ଜୀବନ ତରୀ ଭାସିଯାଏ ଅନନ୍ତ ବିସ୍ତାରୀ ଅକୂଳ ପାରାବାରରେ; ଉର୍ମି ପରେ ଉର୍ମି କାଟିଚାଲେ ଲକ୍ଷହୀନ ଭାବରେ । ବିଜୟ ଉଲ୍ଲାସରେ ଦୃପ୍ତ, କ୍ଷିପ୍ତ, ଅଧୀର ପ୍ରାଣ । ସମୁଦ୍ର ଯେମିତି ଗୋଟେ କ୍ଷୁଦ୍ର ଗୋଷ୍ପଦ ପୁଷ୍କରିଣୀ ତୁଲ୍ୟ । ଯାତ୍ରା ଅବିରତ, ଜଣାନାହିଁ ଏହାର ଶେଷ କେଉଁଠି ।

ଯୌବନର ବାଛ ବିଚାର ନାହିଁ । ଯୋଗୀ, ଭୋଗୀ, ରୋଗୀ- ସମସ୍ତଙ୍କୁ ଛୁଇଁଯାଏ । ଉତ୍ସାହ, ଆବେଗ ଭରିଦିଏ ମନରେ । ବାହୁରେ ଅଦ୍ୟମ ଶକ୍ତି, ଅନ୍ତରରେ ଅକ୍ଷୁଣ୍ଣ ତେଜ ଆଣେ । ବକ୍ଷରେ ଅତୃପ୍ତ ପିପାସାର ସୁଅ ଛୁଟାଏ । ହିମାଳୟ ଶିଖର ଜୁର, ଚନ୍ଦ୍ରଲୋକ ଅଭିଯାନ ପ୍ରାୟାସୀ କରେ । ଅତଳ ସାଗରକୁ ଧାଡି ଦେବାକୁ ସାହାସ ଜୁଟାଏ । ଯୌବନ ହିଁ ସଠିକ୍ କଳିପାରେ ଶୈଶବକୁ । ଇପ୍‌ସିତ ବସ୍ତୁ, ସଫଳତା ଆପେ ମିଳିଯାଏ, ଲକ୍ଷ୍ୟ ଭେଦ କରିହୁଏ ଅନାୟାସରେ, ଜୀବନ ସାର୍ଥକ ହୁଏ ।

ଜୀବନ ଯୁଦ୍ଧରେ କ୍ଷତାକ୍ତ ଲକ୍ଷ୍ମୀକାନ୍ତ; କିନ୍ତୁ ପଳାତକ ନୁହଁନ୍ତି । ଯୌବନକୁ ପ୍ରଶ୍ନ କରନ୍ତି, " ମୁଁ ଆଜି ଜୀବନ ସଂଗ୍ରାମରେ ଭୂପତିତ ହୋଇଛି ବୋଲି ତୁମେ ମତେ ପରିହାସ କରୁଛ ?ମୋର ଅବିମୃଷ୍ୟକାରିତାରେ ଅବଜ୍ଞା କରୁଛ, ଅବହେଳା କରୁଛ, ଘୃଣା କରୁଛ ? ଗୋଟିଏ ଭୁଲ୍ ପାଇଁ ଏତେ ଶାସ୍ତି !" ଏ ପରିପ୍ରେକ୍ଷୀରେ ସ୍ରଷ୍ଟା ନିଜ ଜୀବନର ଦୁଃଖକୁ ଅତି ସନ୍ତର୍ପଣରେ ପ୍ରକାଶ କରିଛନ୍ତି । ଏକଦା ତାଙ୍କ ବୈବାହିକ ଜୀବନ ଥିଲା ପରିପୂର୍ଣ୍ଣ । ଲବଙ୍ଗଲତାଙ୍କୁ ସେ ବିବାହ ପୂର୍ବରୁ ଖୁବ୍ ଭଲ ପାଉଥିଲେ । ଦଇବ ଦାଉ ସାଧିଲା । ଲକ୍ଷ୍ମୀକାନ୍ତ ହେଲେ ରୋଗଗ୍ରସ୍ତ; କିନ୍ତୁ ପତ୍ନୀ ସହଧର୍ମିଣୀ, ସହମର୍ମିଣୀ, ସହକର୍ମିଣୀ ଭାବେ ତାଙ୍କ ଜୀବନରେ ଛାଇ ହୋଇ ରହିଲେ, କ୍ଳାନ୍ତ, ବିରସ, ବିଷଣ୍ଣ ଜୀବନକୁ ରସ-ସରସ କଲେ; ସାହିତ୍ୟ ଜୀବନର ପ୍ରେରଣାଦାତ୍ରୀ ହେଲେ । ସେହି ପ୍ରେମମୟୀ, ମହିୟସୀ ଜୀବନ ସାଥୀଟି ପାଇଁ ଲକ୍ଷ୍ମୀକାନ୍ତଙ୍କ ମନ ବ୍ୟାକୁଳ, ଆକୁଳ; କିନ୍ତୁ ସେ ନିରୁପାୟ । କିଏ ବା ଲଂଘି ପାରିବ ବିଧିର ବିଚିତ୍ର ବିଧାନକୁ ?

ପ୍ରତିଟି ମଣିଷ ପ୍ରେମ କାଙ୍ଗାଳ, ଦୟାର ଭିକାରୀ, ସ୍ନେହ ପିଆସୀ । ଏଥିରୁ ଲକ୍ଷ୍ମୀକାନ୍ତ ମଧ ବାଦ୍ ପଡିନାହାଁନ୍ତି । ସେ ଖୋଜିଛନ୍ତି ନୈସର୍ଗିକ ପ୍ରେମକୁ । ଯୌବନର ଉଦାମତାରେ କାମ ସର୍ବସ୍ୱ ଅବା ଇନ୍ଦ୍ରିୟଗ୍ରାହ୍ୟ ସୁଖ ଚାହିଁ ନାହାନ୍ତି । ଖୋଜିଛନ୍ତି ଶାଶ୍ୱତ ପ୍ରେମ ଟିକକ । ଦେବାକୁ ପ୍ରସ୍ତୁତ; ମାତ୍ର ସେ ପ୍ରତିଦାନ ପ୍ରୟାସୀ ନୁହଁନ୍ତି । ଦୁର୍ଭାଗ୍ୟ ତାଙ୍କ ଦୁଆର ପାଖରେ ଡେରା ପକାଇଛି, ଏକଥା ଆଗରୁ ଜାଣିଥିଲେ ହୁଏତ ସେ ବିବାହ ନିଷ୍ପତ୍ତିରୁ ଥାଆନ୍ତେ ବହୁ ଦୂରରେ । ଯାହା ହେବାର ହୋଇଛି, ଯାହା ଯିବାର ଯାଇଛି । ଏଣିକି ନୂଆ ରାସ୍ତା, ନୂଆ ଦିଗ, ନୂଆ ଯାତ୍ରା । ଏବେ ନଇ ସେପାରିର ଅଜଣା ପୁରୁଷଙ୍କ ଆଡେ ମନ ପ୍ରାଣ, ଧ୍ୟାନ ସବୁକିଛି । ଆଉ ବାନ୍ଧିରଖି ପାରିବନି ଧନ, ଜନ, ଯୌବନ, ସଂସାର ମୋହ । ଉର୍ଦ୍ଧ୍ୱକୁ ଯିବାକୁ ହେବ, ତେବେ ଜଣାପଡିବ ମାଟିରୁ ସ୍ୱର୍ଗର ଦୂରତା, ତଳକୁ ତଳ ଗଲେ ମାପିହେବ ପାତାଳ ତଳର ଗଭୀରତା ।

ଏକଦା ଲକ୍ଷ୍ମୀକାନ୍ତଙ୍କର ସାଧାରଣ ମଣିଷଟେ ପରି ଥିଲା ପିପାସା, କାମନା, ବାସନା । ତାହା ମଧ୍ୟ ସେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି, "ମୁଁ ଚାହେଁ ଜୀବନ, - ମୁଁ ଚାହେଁ ଜୀବନର ରସ- ଜୀବନର ମଦିରା, ଜୀବନର ଭୋଗ, ଆପଣାକୁ ନିଃଶେଷ, ନିଶ୍ଚିହ୍ନ କରିଦେଇ ।" ଏବେ କିନ୍ତୁ ଏକ ଭିନ୍ନ ମାନସିକତା, ବିଭୁ-ପଦ-ମକରନ୍ଦ ପାନ ପିପାସା, ମୁକ୍ତିର ଅଭିପ୍ସା । ଏଣୁ ପ୍ରିୟଜନ, ପରିଜନଙ୍କୁ ତାଙ୍କର ମିନତି," ନାହିଁ ନାହିଁ, ନିବର୍ତ୍ତାଅ ନାହିଁ- ଏ ସଂକଳ୍ପକୁ ମୋର ଭାଙ୍ଗି ଦିଅ ନାହିଁ । ଆଉ ଲେଉଟିବାର ଉପାୟ ନାହିଁ । ଚାଲିବି, ଚାଲିବି; ଅବିରାମ ଅପ୍ରତିହତ ଗତିରେ କେବଳ ଅଗ୍ରସର ହୋଇଯିବି । ଅଙ୍ଗ ଶିଥିଳ ହେଉ, ହୃଦୟ ବିକଳ ହେଉ, ଚରଣ ଅବଶ ହେଉ, ଗତି ମୋର ସ୍ଥଗିତ ହେବ ନାହିଁ, ଲାଭର ଉତ୍କଣ୍ଠା ଛାଡି- ସାଫଲ୍ୟ ବୈଫଲ୍ୟର ଉତ୍କଣ୍ଠା ତ୍ୟାଗ କରିଛି- ଜୟ ପରାଜୟର ବ୍ୟାକୁଳତା ବିସର୍ଜନ ଦେଇଛି । ମୁଁ କ୍ଷିପ୍ତ, ମୁଁ ଉଦ୍ଧତ, ମୁଁ ଉଦ୍‌ଭ୍ରାନ୍ତ- ମୁଁ ଚାହେଁନା ଆଳସ୍ୟର ଜଡତା- ମୁଁ ଚାହେଁନା ତୃପ୍ତିର ଆରାମ- ମୁଁ ଚାହେଁନା ଶ୍ମଶାନର ଶାନ୍ତି । ଏହି କ୍ଲାନ୍ତିହୀନ ପ୍ରୟାସ ହିଁ ମୋର ପରମ କାମ୍ୟ । ଏହି ନିରବଚ୍ଛିନ୍ନ ସଂଗ୍ରାମ ହିଁ ମୋର ଚରମ ସାର୍ଥକତା ।" ପୂର୍ଣ୍ଣତା ଜୀବନକୁ ସୀମିତ କରିଦିଏ, ଭୋଗ ବିଳାସକୁ ପାଛୋଟି ଆଣେ । ବିଫଳତା ମଣିଷକୁ ସଂଗ୍ରାମୀ କରେ, ନୂଆ ସାହାରା ଦିଏ । ସୁଖ କାଳେକାଳେ ଅଳୀକ, ଦୁଃଖ ଚିର ଆପଣାର । ଦୁଃଖୀଟି ହିଁ ଖୋଜେ ପରମ ପୁରୁଷଙ୍କୁ । ତାଙ୍କ ନିକଟକ ହେବାକୁ ତପସ୍ୟା ଜାରି ରଖେ । ସେହି କଥାଟି କେହି ବୁଝୁ ବା ନବୁଝୁ ଲକ୍ଷ୍ମୀକାନ୍ତ ବୁଝିଥିଲେ । ଏହି ଚିନ୍ତନଟି ତାଙ୍କର ପ୍ରତିଟି ବକ୍ତବ୍ୟରେ ପ୍ରତିଫଳିତ ।

ସବୁଥିରୁ ବଞ୍ଚିତ ଲକ୍ଷ୍ମୀକାନ୍ତ । ଏବେ ଅଦୃଷ୍ଟ ଶକ୍ତି ଉପରେ ତାଙ୍କର ଆସ୍ଥା, ଭରସା । ସେହି ପରମାତ୍ମା ଉଦ୍ଦେଶ୍ୟରେ ସେ ଭସାଇ ଦେଇଛନ୍ତି ତାଙ୍କ ଜୀବନ- ଯୌବନ- ନାଆକୁ । ପରମ କାରୁଣିକ ଭାବଗ୍ରାହୀ ନିଶ୍ଚୟ ପାରି କରିଦେବେ ଭବସାଗରରୁ । ନିରବ ନିଶିଥିନୀରେ, ପଉଷ ପାହାନ୍ତି ଅବା ତପ୍ତ ମଧ୍ୟାହ୍ନରେ, ତୁହାକୁ ତୁହା ଶୁଣିଲେଣି ଏକ ନିଆରା ସ୍ୱର । ଆତ୍ମା ଏବେ ଅଥୟ, ଉଚ୍ଛନ୍ନ ହେଲାଣି ନଈ ସେପାରିରେ ପ୍ରାଣପ୍ରିୟଙ୍କ ସହ ଏକାତ୍ମ ହୋଇଯିବାକୁ । ଭାବବିହ୍ୱଳ ହୋଇ ପଡିଛନ୍ତି ଲକ୍ଷ୍ମୀକାନ୍ତ, ଗାଇଛନ୍ତି ଜୀବନ ସଂଗୀତ ଭାବ ବିନୋଦିଆଙ୍କ ଉଦ୍ଦେଶ୍ୟରେ । ଏହା ଏକ ନିଆରା ସାତ୍ତ୍ୱିକ ଅନୁଭବ । କାମିନୀ, କାଞ୍ଚନ, ପଦପଦବୀ, କ୍ଷମତା ମୋହ ଠାରୁ ଏ କ'ଣ ଯୌବନର ଶ୍ରେଷ୍ଠ ଉପଲବ୍ଧି ଟିଏ ନୁହେଁ କି ?



# ଅସହଯୋଗୀର କିଛି କଥା, କେତେ ବ୍ୟଥା

(୧)

୧୯୧୫, ଗାନ୍ଧିଜୀ ତାଙ୍କ ରାଜନୀତିକ ଗୁରୁ ଗୋପାଳକୃଷ୍ଣ ଗୋଖଲେଙ୍କ ପରାମର୍ଶରେ ଯୋଗଦେଲେ ଭାରତୀୟ ଜାତୀୟ କଂଗ୍ରେସରେ । ଏହା ଥିଲା ଇତିହାସର ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବାକୁ ଗାନ୍ଧିଜୀ ମଧ୍ୟ ଆଗ୍ରହୀ ହେଲେ; କାରଣ ଦକ୍ଷିଣ ଆଫ୍ରିକାରେ ସେ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ସତ୍ୟ, ସତ୍ୟାଗ୍ରହ, ଅହିଂସା ନୀତିର ପ୍ରୟୋଗ କରି ପାଇଥିଲେ ଅଭୂତପୂର୍ବ ସଫଳତା । କହିବା ବାହୁଲ୍ୟ ଯେ, ଏ ସମସ୍ତ ଅମୋଘ ଅସ୍ତ୍ର ବଳରେ ଭାରତରୁ ବ୍ରିଟିଶରାଜ ବିଲୋପ ସାଧନ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ମହାତ୍ମାଗାନ୍ଧୀ ।

ଗାନ୍ଧିଜୀ ଜଣେ ସଦାଚାରୀ, ନୀତିନିଷ୍ଠ ରାଜନୀତିଜ୍ଞ । ପ୍ରଥମାବସ୍ଥାରେ ସେ ଇଂରେଜ ଜାତିକୁ ଶିକ୍ଷିତ, ଭଦ୍ର ଭାବେ ବିବେଚନା କଲେ; ଏକ ଉଦାରବାଦୀ ନୀତି ପୋଷଣ ପୂର୍ବକ ଇଂରେଜମାନଙ୍କୁ ସନ୍ତୁଷ୍ଟ କରି ଭାରତ ପାଇଁ ସ୍ୱାୟତ୍ତଶାସନ ପ୍ରାପ୍ତିର ଲକ୍ଷ୍ୟ ରଖିଥିଲେ । ପ୍ରଥମ ବିଶ୍ୱଯୁଦ୍ଧରେ ମଧ୍ୟ ଭାରତୀୟ ସୈନ୍ୟଙ୍କୁ ଇଂରେଜ ପକ୍ଷ ସମର୍ଥନ ପାଇଁ ପରାମର୍ଶ ଦେଲେ । ଏଭଳି ପଦକ୍ଷେପରେ ପ୍ରୀତ ଚତୁର ଇଂରେଜ ସରକାର ଗାନ୍ଧିଜୀଙ୍କୁ କାଇଜର-ଇ-ହିନ୍ଦ୍ ଉପାଧିରେ ଭୂଷିତ କଲେ; ମାତ୍ର ବିଶ୍ୱଯୁଦ୍ଧର ପରିସମାପ୍ତି ପରେ ବିଦେଶୀ ଶାସକଙ୍କ ତ୍ରୁଟିପୂର୍ଣ୍ଣ ଶାସନନୀତି, ବର୍ବରତା, ଦମନଲୀଳା ତାଙ୍କ ମୋହ ଭଙ୍ଗକଲା । ଭାରତ ଶାସନ ଆଇନ (୧୯୧୯), ରାଓ୍ୱଲଟ ଆଇନ (୧୯୧୯), ଜାଲିଆନାଓ୍ୱାଲାବାଗ ଗଣ ହତ୍ୟା (ଏପ୍ରିଲ ୧୩, ୧୯୧୯) ଏ ସମସ୍ତ ଘଟଣା ସ୍ୱାଧୀନତା ସଂଗ୍ରାମୀଙ୍କୁ ମର୍ମାହତ କଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଖିଲାଫତ ସମ୍ମିଳନୀ (ଡିସେମ୍ବର ୨୪,

୧ ୯ ୧ ୯ )ରେ ତୁର୍କୀ ସୁଲତାନ ବା ଖଲିଫା ପଦ ଉଚ୍ଛେଦ କରି ଇଂରେଜମାନେ ସମଗ୍ର ମୁସଲମାନ ସମ୍ପ୍ରଦାୟଙ୍କ ବିଶ୍ୱାସ ଉପରେ କିପରି କୁଠାରଘାତ କଲେ ତାହା ସେ ସର୍ବସାଧାରଣଙ୍କୁ ଅବଗତ କଲେ । ମୁସଲମାନମାନେ ମଧ୍ୟ ଗାନ୍ଧୀଙ୍କ ପକ୍ଷ ସମର୍ଥନ କଲେ । ବସ୍ତୁତଃ ସର୍ବଭାରତୀୟ ସ୍ତରରେ ଏକ ସଂଘବଦ୍ଧ ଅସହଯୋଗର ପରିକଳ୍ପନା କରି, ସେ ଏହାକୁ ଜାତୀୟ କଂଗ୍ରେସର କଲିକତା ଅଧିବେଶନ ( ୧ ୯ ୨ ୦ ସେପ୍ଟେମ୍ବର ୬ ତାରିଖ)ରେ ଆଗତ କଲେ । କଂଗ୍ରେସ ମଧ୍ୟ ଏ ପ୍ରସ୍ତାବକୁ ସମର୍ଥନ କଲା । ସେଇବର୍ଷ ଡିସେମ୍ବର ମାସରେ ଜାତୀୟ କଂଗ୍ରେସ ଅସହଯୋଗ ଆନ୍ଦୋଳନର ଶେଷ ସିଦ୍ଧାନ୍ତ ଗ୍ରହଣ କଲା । ନେତୃତ୍ୱ ନେଲେ ମହାତ୍ମାଗାନ୍ଧୀ । ସାରା ଭାରତ ଜାଗି ଉଠିଲା । 'ବନ୍ଦେମାତରମ୍' ଧ୍ୱନିରେ ଗଗନ ପବନ ନିନାଦିତ ହେଲା । ଚାଲିଲା ଅହିଂସା ହରତାଳ; ମାତ୍ର ୧ ୯ ୨ ୨, ଫେବୃୟାରୀ ୫ରେ ପୋଲିସ ନିରସ୍ତ୍ର ଶୋଭାଯାତ୍ରୀଙ୍କ ଉପରେ ଗୁଳିଚାଳନା କଲେ ଉତ୍ତରପ୍ରଦେଶ ଗୋରଖପୁରର ଚୌରୀଚୌରାଠାରେ । ଉତ୍କ୍ଷିପ୍ତ ସତ୍ୟାଗ୍ରହୀମାନେ ଏଠାକାର ପୋଲିସ୍ ଷ୍ଟେସନରେ ଅଗ୍ନିସଂଯୋଗ କରିଦେଲେ । ୨ ୨ ଜଣ ପୋଲିସ ଜୀଅଁନ୍ତା ଜଳିଗଲେ । ମହାତ୍ମାଗାନ୍ଧୀ ବନ୍ଦ କରିଦେଲେ ଅସହଯୋଗ ଆନ୍ଦୋଳନ । ଏକଥାକୁ ବହୁ ସ୍ୱାଧୀନ ଚେତା ଗ୍ରହଣ କରିପାରିନଥିଲେ ମଧ୍ୟ ସର୍ବଭାରତୀୟ ସ୍ତରର ଏହି ଗଣ ଆନ୍ଦୋଳନରେ ଯବନିକା ପଡ଼ିଲା ।

ଅସହଯୋଗ ଆନ୍ଦୋଳନର ସଫଳତା, ବିଫଳତାକୁ ନେଇ କେତେ କ'ଣ ଚର୍ଚ୍ଚା । ବ୍ରିଟିଶରାଜ ବିରୋଧରେ ଏହି ସଂଗ୍ରାମ ସାରା ଦେଶରେ ଉଦ୍ଦୀପନା ସୃଷ୍ଟି କଲା । ହଜାର ହଜାର ସତ୍ୟାଗ୍ରହୀ ସ୍ୱାଧୀନତା ଯୁଦ୍ଧରେ ଝାସ ଦେଲେ । ସ୍କୁଲ କଲେଜରୁ ପିଲାଏ ପାଠ ଛାଡ଼ିଲେ । ଚାଲିଲା ବିଦେଶୀ ଦ୍ରବ୍ୟ, ସରକାରୀ ଶିକ୍ଷାନୁଷ୍ଠାନ, ସରକାରୀ ସଭାସମିତି, କୋର୍ଟ କଚେରୀ; ଭାରତ ଶାସନ ଆଇନ ଅନୁଯାୟୀ ଗଠିତ ପରିଷଦ, କାଉନସିଲ - ସବୁଥିରେ ବର୍ଜନ । ମଦଦୋକାନ, ବିଦେଶୀ ବସ୍ତ୍ରାଳୟ, ବେଶ୍ୟାଳୟ ଆଗରେ ପିକେଟିଂ । ସମସ୍ତ ମୋକଦ୍ଦମା ବିଚାର ପାଇଁ ପଞ୍ଚାୟତ ଅଦାଲତ, ଜାତୀୟ ଶିକ୍ଷାନୁଷ୍ଠାନ, ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର, କୁଟୀର ଶିଳ୍ପର ବିକାଶ, ସାମ୍ପ୍ରଦାୟିକ ଏକତା, ଅସ୍ପୃଶ୍ୟତା ଦୂରୀକରଣ, ଆନ୍ଦୋଳନ ପରିଚାଳନା ପାଇଁ ତିଳକ ସ୍ୱରାଜ ପାଣ୍ଠି ଗଠନ - ଏ ସମସ୍ତ ଥିଲା ଅସଯୋଗ ଆନ୍ଦୋଳନର ଗଠନମୂଳକ କାର୍ଯ୍ୟ । ସବୁର ଉର୍ଦ୍ଧ୍ୱରେ ଜାତୀୟତାବାଦୀ ଅବହାଓ୍ୱା

ଦେଶବାସୀଙ୍କୁ ସ୍ୱାଧୀନତା ସଚେତନ କଲା । ମୁକ୍ତି ସଂଗ୍ରାମ ଗୋଟେ ଗୋଷ୍ଠୀ ମଧ୍ୟରେ ସୀମିତ ନରହି, ଗଣ ଆନ୍ଦୋଳନରେ ପରିଣତ ହେଲା । ସ୍ୱରାଜ ହାସଲ ଥିଲା· ମୁକ୍ତି ସଂଗ୍ରାମୀଙ୍କ ଦୃଢ଼ ପ୍ରତିଜ୍ଞା; ମାତ୍ର ଏହାର କେତୋଟି ବିଫଳତାକୁ ମଧ୍ୟ ଏଡ଼ାଇ ଦିଆଯାଇ ନପାରେ । ଗୋଟେ କଥାରେ କହିଲେ ଅସହଯୋଗ ଆନ୍ଦୋଳନର ପ୍ରକୃଷ୍ଟ ସମୟ ହୋଇନଥିଲା । ଜନତା ମଧ୍ୟ ଏ ପ୍ରକାର ସଂଗ୍ରାମ ପାଇଁ ଆଗରୁ ତାଲିମ ପାଇନଥିଲେ । ସେମାନେ ସତ୍ୟ, ସତ୍ୟାଗ୍ରହ, ଅହିଂସା ସଚେତନ ନଥିଲେ । ଏତଦ୍‌ଭିନ୍ନ ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ପ୍ରବଣତା ମାତ୍ରା ଅଧିକ ଥିଲା; ବାସ୍ତବତା ଥିଲା କାହିଁ କେତେ ଦୂରରେ । ଫଳତଃ ବହୁ ଯୁବକ ହତୋତ୍ସାହ ହୋଇ ମୁକ୍ତିସଂଗ୍ରାମ ପଥ ପରିହାର କଲେ । ଅନେକ ସଦାଚାରୀ ସ୍ୱାଧୀନତା ସଂଗ୍ରାମୀ ସୃଷ୍ଟି ହୋଇଥିବା ସ୍ଥଳେ ଦଳେ ଅସାଧୁ ସତ୍ୟାଗ୍ରହୀର ମୁଖାପିନ୍ଧି ଅଭିନୟ କଲେ । ଏହା ବ୍ୟଥିତ କଲା ସଚ୍ଚୋଟ ସ୍ୱାଧୀନତା ସଂଗ୍ରାମୀଙ୍କୁ । କବି ଲେଖକମାନେ ମଧ୍ୟ ଏକଥାକୁ ଚିତ୍ରଣ କଲେ ନିଜ ନିଜ କଳାକୃତିରେ । ସେମାନଙ୍କ ମଧ୍ୟରୁ ମହାନ ସାହିତ୍ୟିକ, ଜାତୀୟତାବାଦୀ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଅନ୍ୟତମ ।

ଶେଷହେଲା ଅସହଯୋଗ ଆନ୍ଦୋଳନ । ଜଣେ ସଚ୍ଚା ସତ୍ୟାଗ୍ରହୀର ମନକଥାକୁ ବଖାଣିଲେ ଆପଣାର 'ଅସହଯୋଗୀର ଆତ୍ମକଥା'ରେ ଲକ୍ଷ୍ମୀକାନ୍ତ । ଅସହଯୋଗୀର ପ୍ରାଣର କଥା, ବ୍ୟଥା ଅନୁଭବକୁ ନେଇ ଏ ବ୍ୟଙ୍ଗାତ୍ମକ ରଚନା । ଲେଖାଟି ଉତ୍କଳ ସାହିତ୍ୟରେ ଧାରାବାହିକ ଭାବେ, ଛଦ୍ମ ନାମରେ ପ୍ରକାଶ ପାଇଲା । କେହି କେହି ଲେଖକଙ୍କୁ ପ୍ରତିକ୍ରିୟାଶୀଳ ବୋଲି ମତବ୍ୟକ୍ତ କଲେ; ମାତ୍ର କାନ୍ତକବି ଥିଲେ ଦୂରଦ୍ରଷ୍ଟା । ଭାରତର ଭବିଷ୍ୟତ ଯେମିତି ତାଙ୍କୁ ଜଳ ଜଳ ଦିଶି ଯାଇଥିଲା । ଏଣୁ ସମାଜରେ ଥିବା ଅଳିହା ଆବର୍ଜନାକୁ ସେ ସଫା କରିଦେବା ପାଇଁ କଲମ ଚଳାଇଥିଲେ । ସ୍ୱାଧୀନତାର ୬୭ ବର୍ଷ ପରେ ଯଦି ଜଣେ ସଚେତନ ପାଠକ ଅସହଯୋଗୀର ଆତ୍ମକଥା ପାଠକଲେ; ତା'ର ହୃଦ୍‌ବୋଧ ହେବ ଯେ, ସେ ଦିନ କାନ୍ତକବି କିଭଳି ଏ ଜାତିର ଅସ୍ଥି, ମଜ୍ଜା ସହିତ ବିଜଡ଼ିତ ହୋଇ ଯାଇଥିଲେ, ତଟସ୍ଥ ଭାବେ ଲେଖି ଯାଇଥିଲେ ଜାତି ଜୀବନର ସମ୍ଭାବ୍ୟ ଭବିଷ୍ୟତକୁ । ଅଧୁନା କ୍ଷମତାର କନ୍ଦଳ, ଅର୍ଥ ଲାଳସା, ସଦାଚାର ବିହୀନ ରାଜନୀତିରେ ରାହୁଗ୍ରସ୍ତ ଆମ ସୁନାର ଭାରତ । ଏଇକଥାକୁ ଲକ୍ଷ୍ମୀକାନ୍ତ କାହିଁ କେତେକାଳ ପୂର୍ବରୁ ଆମ ଆଗରେ ଥୋଇ ଯାଇଛନ୍ତି । ସତରେ; ଅସହଯୋଗୀର ଆତ୍ମକଥା ଜାତୀୟ ଜୀବନର ଏକ ସ୍ଖଳିତ ଚିତ୍ରପଟ, ଗୋଟେ ନିର୍ଭୁଲ ରାଜନୀତିକ ଦଲିଲ !

ଗାନ୍ଧିମନ୍ତ୍ର ବିହ୍ୱଳ ସାରା ଭାରତବର୍ଷ । ମହାତ୍ମା କହିଲେ ସ୍କୁଲ କଲେଜ ବର୍ଜନ କର, ପିଲେ ପାଠ ଛାଡ଼ିଲେ । ଯୋଗଦେଲେ ଅସହଯୋଗ ଆନ୍ଦୋଳନରେ । ଏମିତି ସ୍କୁଲ ଛାତ୍ରଟିଏ ସେତେବେଳେ ପଢୁଥାଏ ସେକେଣ୍ଡ କ୍ଲାସ୍‌ରେ । ଦେଶରେ ଗାନ୍ଧିଗୋଳ ଲାଗିଲା । ସମସ୍ତେ କହିଲେ କି ସ୍କୁଲ୍ ଉଠିଯିବ, ସରକାର ଉଠିଯିବ, ରେଳ ଉଠିଯିବ, ଟେଲିଗ୍ରାଫ୍, ମଟର, ଘଡ଼ି, ସାଇକେଲ - ସବୁ ଉଠିଯିବ; ଲୋକେ ଚଟ୍ଟାଳୀ, ଟୋଲ୍‌ରେ ପାଠ ପଢ଼ିବେ । ପୈଦଲରେ ବାଟ ଚାଲିବେ । ଜଳଯନ୍ତ୍ରରେ ସମୟ ଜାଣିବେ, ସ୍ୱାଭାବିକ ଜୀବନ ଯାପନ କରି ଲଙ୍ଗଳା ହୋଇ ରହିବେ । ସତ୍ୟଯୁଗ ଫେରିବ । ଏଣୁ ଆପଣା ଆପଣା କିନାରା କଟକଣାରେ ଯୁବକମାନେ ଲାଗିପଡ଼ିଲେ । ନିଜକୁ ଖୁବ୍ ଚାଲାଖ ମନେକରି ନିଜର ରାହା ଉଣ୍ଡିନେଲେ । ସେ ପିଲାଟି ମଧ୍ୟ ବୁଝିଥିଲା, "ଯୋର ଯା'ର ମୁଲକ ତା'ର" ଦିନ ଆସୁଛି । ଏମିତି ପାଠ, ପରୀକ୍ଷା ଡରୁଆ ପିଲାଙ୍କୁ ମିଳିଗଲା ଅପୂର୍ବ ସୁଯୋଗ ।  ସ୍କୁଲର ଅନାଦି ମାଷ୍ଟ୍ରେ ନିରୀହ ପିଲା ପାଇଁ ଥିଲେ ମୂର୍ତ୍ତିମାନ ଯମ । ସତେ ଯେମିତି ସେ ଇଂରେଜ ସରକାର । ଉଠିଯିବ ସରକାର, ରହିବେନି ଇଂରେଜଙ୍କ ଖୋମତିଆ ମାଷ୍ଟ୍ରମାନେ । ଏମନ୍ତ ଭାବି ଛାତ୍ରମାନେ ହଠାତ୍ 'ଜୟ ମହାତ୍ମାଜୀ ଜୟ' ଧ୍ୱନି ଦେଇ ଶ୍ରେଣୀକକ୍ଷରୁ ବାହାରିଲେ ପଟୁଆରରେ । ଏମିତି ଗୋଳ ଶୁଣି ଉଚ୍ଚଶ୍ରେଣୀର ପିଲାଏ ଶୋଭାଯାତ୍ରାରେ ଯୋଗଦେଲେ । ବନ୍ଦେ ମାତରମ୍ ଧ୍ୱନି ଦେଇ ଚାଲିଲେ । ସେମାନଙ୍କ ମଧ୍ୟରେ ମିଶିଲେ କେତେଟା ବଜାରୀ ଟୋକା । ଶୋଭାଯାତ୍ରା ପହଞ୍ଚିଲା ସ୍ୱରାଜ ଆଶ୍ରମରେ । ବଡ଼ ସଭାଟାଏ ହେଲା । ସେଠାରେ ଶୋଭାଯାତ୍ରୀ ଦଳ ଶପଥ ନେଲେ, "ଧନ, ମନ, ପ୍ରାଣ, ମାନ ସବୁ ଦେଶସେବାରେ ଉତ୍ସର୍ଗ କଲୁଁ ଓ ଦେଶ ପଣ୍ଡା ବା ପୂଜାରୀମାନଙ୍କ ହସ୍ତରେ ଆତ୍ମ ସମର୍ପଣ କଲୁଁ" - ଏହା ଥିଲା ସେଦିନର ଦୀକ୍ଷା ଗ୍ରହଣ ।

ସତ୍ୟାଗ୍ରହୀଙ୍କ ପହିଲି ଜୀବନ । କାହିଁ କେତେ ରୋମାଞ୍ଚ । କଞ୍ଚା ଅଧାଗଢ଼ା ମଣିଷମନେ ଆଜି ଦେଶ ସେବାରେ । ଗୋଟେ ପଟେ ସ୍ୱଦେଶ ପ୍ରୀତି; ଆରପଟଟି ସମ୍ପୂର୍ଣ୍ଣ ଅନ୍ଧାର । ଏ ପିଲାଏ ନବୀନ ସନ୍ନ୍ୟାସୀ, ଜାତୀୟ ସଙ୍ଗୀତ ଗାନରେ କି ଉନ୍ମାଦନା ତାଙ୍କର ? ତାହା ପ୍ରକାଶ କରିଛନ୍ତି ଲକ୍ଷ୍ମୀକାନ୍ତ ଏହି ବାଳକ ଅସହଯୋଗୀ ମୁହଁରେ, "ଓହଃ ! ସେଦିନ ମନରେ କି ଆନନ୍ଦ, ପ୍ରାଣରେ କି ଫୁର୍ତ୍ତି; ଅନ୍ତରରେ କି ଆବେଗପୂର୍ଣ୍ଣ ସ୍ପନ୍ଦନ ! ସେଦିନ ଯେକି ସ୍ୱାଧୀନତା, କି ମୁକ୍ତିର ଝଞ୍ଜା ଅନୁଭବ କରୁଥାଏ, ସେ କଥା କ'ଣ କହିବି ! ଏ

ସୟିତାନୀ ଶାସନ ଧୂଳିସାତ୍ କରିଦେବାକୁ ହେବ । ଏ ସୟିତାନୀ ଶିକ୍ଷାପ୍ରଣାଳୀ ଭାଙ୍ଗି ଚୂର୍‌ମାର କରିଦେବାକୁ ହେବ । ଧ୍ୱଂସ, ବିଧ୍ୱଂସ । ଆଗେ ଧ୍ୱଂସ ନହେଲେ ସୃଷ୍ଟି ଆସିବ କାହୁଁ? ବିନାଶ ନହେଲେ ଗଠନ ଆସିବ କାହିଁ? ମିଥ୍ୟା ଓ ଜୁଆଚ୍ଚୋରୀର ଭିତ୍ତି ଉପରେ ପ୍ରତିଷ୍ଠିତ ଏ ଭଣ୍ଡ ସରକାର ସହିତ ସମସ୍ତ ସମ୍ପର୍କ ତ୍ୟାଗକରି, ପ୍ରାୟଶ୍ଚିତ ଦ୍ୱାରା ଅଙ୍ଗ ଶୋଧନ କରି, ନୂତନ ସତ୍ୟରାଜ୍ୟ ପ୍ରବର୍ତ୍ତନ କରିବାକୁ ହେବ ।" ଏଭଳି ପ୍ରବଣତାରେ ଜଡ଼୍‌ସଡ଼୍ ଛାତ୍ରମାନଙ୍କର ଆଉ ଘର ଲେଉଟାଣି ହେଲାନି । ଏମାନଙ୍କ କୀର୍ତ୍ତିକଳାପରେ ଅଭିଭାବକ ବଡ଼ ବୀତସ୍ପୃହ । ପିଲାଙ୍କୁ ସେମାନେ ଇଂରାଜୀ ପଢ଼ାଉଥିଲେ, ବାବୁ ହୋଇଥାନ୍ତେ । ସରକାରୀ ଚାକିରୀ କରିଥାନ୍ତେ; ହେଉପଛେ ଗୋଲାମଗିରି । କିନ୍ତୁ ଗାନ୍ଧିମନ୍ତ୍ରର କିମିଆ ନୂତନ ସତ୍ୟାଗ୍ରହୀମାନଙ୍କୁ ଗୃହଛଡ଼ା କରିଦେଲା । ଏଣେ ମୁରବିମାନଙ୍କ କଡ଼ା ହୁକୁମ, "ଯାଙ୍କୁ ଘରୁ ତଡ଼ିଦିଅ, ଏମାନଙ୍କର ମୁହଁ ଚାହଁନାହିଁ ।" ଏଥିରେ ପିଲାଙ୍କର ଆପତ୍ତି ନଥିଲା, ଏଣିକି ପାଠଶାଠ ପଢ଼ାରୁ ତ୍ରାହି । ସ୍ୱରାଜ ଆଶ୍ରମରେ ସଦା 'ସ୍ୱାଗତମ୍' । ଚୁଡ଼ା ଚାଉଳର ତ ଅଭାବ ନାହିଁ । ତହିଁ ଉପରେ ଯେ ନେଇଆଣି ଥୋଇ ପାରିଲା ତା'ର ଚର୍ବ୍ୟ ଚୋଷ୍ୟାଦି ବା ପଚାରେ କିଏ !" ଏଣିକି ବିଦେଶୀ ଶାସକଙ୍କୁ ଅସହଯୋଗ; ସତ୍ୟାଗ୍ରହ କରିବାକୁ ପଡ଼ିବ । କିନ୍ତୁ କୋମଳମତି ଛାତ୍ରଟି ପାଇଁ ସତ୍ୟାଗ୍ରହର ଅର୍ଥ ଥିଲା ହାଲ୍‌କୁ ପାଠପଢ଼ା ଛାଡ଼ିବୁଁ, ଆଉ ବାବା ନନାଙ୍କ କଥା ମାନିବୁ ନାହିଁ । ସୟିତାନୀ ନୀତିରେ ପରିପୋଷକ ଯେ, ତା'ର ଅନୁବର୍ତ୍ତନ କରିବା ହିଁ ମହାପାପ; କାରଣ ତାହା ଆମ ଭିତରେ ଯେଉଁ ବିବେକରୂପୀ ପରମାତ୍ମା ପୁରୁଷ ଅଛନ୍ତି ତାଙ୍କ ସହିତ ବିଦ୍ରୋହାଚରଣ । ଆଉ ସତ୍ୟଟା କ'ଣ ନା ଯିଶୁଙ୍କ ପରି ଏ ଗାଲ ରେ ଚାପୁଡ଼ା ଖାଇ ସେ ଗାଲକୁ ଦେଖାଇ ଦେବାକୁ ହେବ - କିମ୍ବା ନିତ୍ୟାନନ୍ଦଙ୍କ ପରି ମାର୍ ଖେଯେ ପ୍ରେମ୍ ବିଲାଇବା -ଏହିପରି କେତେ କ'ଣ ଭାବ, ଭାବାନ୍ତର । ବିଚରା ଛାତ୍ର ଅସହଯୋଗୀଏ କ୍ଲାନ୍ତିରେ ସେଦିନ ଶୋଇଗଲା । ଆଗକୁ ଅସହଯୋଗୀର କଠିନ ଜୀବନ, ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ । ଯେଉଁ ଅସହଯୋଗୀଟି କାୟ-ମନୋବାକ୍ୟରେ ନିଜକୁ ଦେଶପାଇଁ ସଅଁପି ଦେଲା ସେ ହେଲା ଶୁଦ୍ଧ ସୁବର୍ଣ୍ଣପରି ସତ୍ ମଣିଷ, ଯେଉଁମାନେ ଅସହଯୋଗକୁ ଦୁରୁପଯୋଗ କଲେ ସେମାନେ ହେଲେ ଲାଭବାନ । ଆଗାମୀ ଦିନରେ ସେଇମାନେ ହେଲେ କ୍ଷମତା ରାଜନୀତିର ଅଂଶୀଦାର । ଏକଥାକୁ ଲକ୍ଷ୍ମୀକାନ୍ତ ସୂଚନା ଦେଇଥିଲେ କାହିଁ କେତେ ବର୍ଷ ଆଗରୁ ।

(୨)

ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଅସହଯୋଗ ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମକୁ ଏକ ନୂଆ ମୋଡ଼ ଦେଲା । ଅନ୍ତ ହେଲା ଆବେଦନ ନିବେଦନର ଉଦାରବାଦୀ ଯୁଗ (୧୮୮୫-୧୯୦୫); ନିରବି ଗଲା ଚରମପନ୍ଥୀ ଯୁଗ (୧୯୦୫-୧୯୧୯)ର ସଂଗ୍ରାମୀ ସ୍ୱର । ସାରା ଦେଶ ଆର୍ଦ୍ର ହେଲା ଗାନ୍ଧିଜୀଙ୍କ ଅହିଂସା ମନ୍ତ୍ରରେ । ପାଠୁଆ, ଦରପାଠୁଆ, ଅଧାପାଠୁଆ; ଖଟିଖିଆ ଦିନମଜୁରିଆ ଠାରୁ ରିକ୍‌ସା ଟାଣୁଥିବା ସାଧାରଣ ଦେଶବାସୀଙ୍କୁ ଗାନ୍ଧିଜୀ ଏକତ୍ର କରିପାରିଲେ ଆପଣାର ନୀତି, ଆଦର୍ଶରେ । ଚାଲିଲା ଗଣ ଆନ୍ଦୋଳନ । ଏହା ପଶ୍ଚାତରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଥିଲା ଅକୁଣ୍ଠ ସମର୍ଥନ । ଦୁରାରୋଗ୍ୟ କୁଷ୍ଠବ୍ୟାଧି ଦାଉ ସାଧିଲା । ମୁକ୍ତି ଯୁଦ୍ଧରେ ପ୍ରତ୍ୟକ୍ଷ ଭାବେ ସେ ସାମିଲ ହୋଇ ପାରିଲେନି । ସମ୍ଭବତଃ ଏହା ବିଧି ନିର୍ଦ୍ଦିଷ୍ଟ । କିନ୍ତୁ ତାଙ୍କ ପରିବାରର ସମସ୍ତ ସଦସ୍ୟ, ସଦସ୍ୟା ଉତ୍ସର୍ଗୀକୃତ ସ୍ୱତନ୍ତ୍ରତା ସେନାନୀ । କାନ୍ତକବି ରାଶି ରାଶି ଦେଶାତ୍ମବୋଧକ ଉଦ୍‌ବୋଧନ ଗୀତିକା ରଚନା କଲେ; ଜନତାଙ୍କୁ ମତାଇଲେ, ତତାଇଲେ, ଜଗାଇଲେ; ଦେଶପ୍ରେମ ମନ୍ଦାକିନୀ ଧାରାରେ ସିକ୍ତ ହେଲେ ଉତ୍କଳ ସନ୍ତାନଗଣ । ଗାନ୍ଧିଜୀଙ୍କ ସତ୍ୟ, ସତ୍ୟାଗ୍ରହ, ଅହିଂସା ସଂଗ୍ରାମ ପ୍ରତି ତାଙ୍କର ଥିଲା ପ୍ରଗାଢ଼ ଅନୁରକ୍ତି । କିନ୍ତୁ ଦଳେ ଛଦ୍ମବେଶୀ ସତ୍ୟାଗ୍ରହୀ ଅହିଂସାର ଧ୍ୱଜାତଳେ ସମବେତ ହେଲେ । ଏମାନେ ଭୀରୁ, କାପୁରୁଷ; ଗୋଟେ ଗୋଟେ ସ୍ୱାର୍ଥାନ୍ୱେଷୀ ସୁବିଧାବାଦୀ । ତ୍ୟାଗ ନୁହେଁ, ଭୋଗରେ ସେମାନେ ମଜ୍ଜିରହିଲେ । ଅନ୍ୟପକ୍ଷରେ ଗୋଟେ ମୁଷ୍ଟିମେୟ ସଚ୍ଚା ସଂଗ୍ରାମୀମାନେ ସ୍ୱାଧୀନତା ଯୁଦ୍ଧକୁ ଆଗେଇନେଲେ । ପୋଲିସର ଜୁଲମ୍, ବନ୍ଧୁକ ଗୁଳିଗୋଳାକୁ ଭ୍ରୂକ୍ଷେପ କଲେନି; ଅନେକ ମଧ୍ୟ ସହିଦ୍ ହେଲେ । ଏଇ ଦେଶପ୍ରେମୀ ମାନେ ଦିନେ ଯେ ଅଣଦେଖା ହେବେ ତାହା, ଲକ୍ଷ୍ମୀକାନ୍ତ ହୃଦୟଙ୍ଗମ କରିଥିଲେ । ତେଣୁ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ଭିନ୍ନ । ସେ ଚରମ ପନ୍ଥାରେ ବିଶ୍ୱାସୀ ଥିଲେ । ତାଙ୍କର ଦରକାର ସଚ୍ଚୋଟ ଦେଶପ୍ରେମୀ ଯୁବକ; ଯିଏ ଦେଶ ପାଇଁ ଜୀବନ ଦେଇପାରିବ, ଜୀବନ ନେଇ ପାରିବ । ସେଇମାନେ ହିଁ ଦୁଃସାହାସୀ; ଧଣ୍ଡ, ଢମଣା ନୁହଁନ୍ତି, ନାଗବଚ୍ଛା । ହାତ, ହତିଆର, ବୋମାରେ ସେମାନଙ୍କର ଯୁଦ୍ଧ । ଏଥିପାଇଁ ଦରକାର ଶକ୍ତି । ତାହା ମିଳେ ଦଣ୍ଡବୈଠକ, ବାଡ଼ିଖେଳ, କୁସ୍ତିକସରତରେ । ଏ ପ୍ରକାର ଚିନ୍ତନଟି ତାଙ୍କ କଣାମାମୁ ଉପନ୍ୟାସରେ ଚିତ୍ରିତ; ମାତ୍ର ଅସହଯୋଗୀର ଆତ୍ମକଥା

ଏକ ଭିନ୍ନ ସ୍ୱାଦର ରଚନା । ଏଥିରେ ସେ ମିଛ ଅସହଯୋଗୀଙ୍କ ମୁଖା ଖୋଲି ଦେଇଛନ୍ତି; ଗାନ୍ଧୀଙ୍କ ଆଦର୍ଶର ଅପବ୍ୟବହାର କରି ଫାଇଦା ଉଠାଉଥିବା କ୍ଷମତାନ୍ଧଙ୍କୁ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି ।

ଅସହଯୋଗ ଆନ୍ଦୋଳନର ଏକ ବିଶେଷ ଅଙ୍ଗ ବର୍ଜନ କାର୍ଯ୍ୟକ୍ରମ । ବିଦେଶୀ ବସ୍ତ୍ର, ଦ୍ରବ୍ୟ-ସବୁ ବର୍ଜନ । ସ୍ୱଦେଶୀ ବସ୍ତୁର ବ୍ୟବହାର; ପୋଷାକପତ୍ର ଠାରୁ ନିତ୍ୟ ବ୍ୟବହାର୍ଯ୍ୟ ଅନ୍ୟାନ୍ୟ ଦ୍ରବ୍ୟ ପର୍ଯ୍ୟନ୍ତ । ଭାରତୀୟ ଜାତୀୟ କଂଗ୍ରେସ ବଙ୍ଗ ବିଭାଜନ (୧୯୦୫) ଯୋଗୁଁ ସ୍ୱଦେଶୀ ଆନ୍ଦୋଳନ ନିଷ୍ପତ୍ତି ନେଇଥିଲା; ବିଦେଶୀ ଦ୍ରବ୍ୟ ବର୍ଜନକୁ ତ୍ୱରାନ୍ୱିତ କରାଯାଇଥିଲା । ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ସ୍ୱଇଚ୍ଛାରେ ନେତା, ଜନତା ଆପଣା ଆପଣାର ବିଦେଶୀ ଧୋତି, କାମିଜ, ଜୋତା, ଛତା ଆଦି ପଦାର୍ଥରେ ଅଗ୍ନି ସଂଯୋଗ କରିଥିଲେ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ଶହଶହ ଓଡ଼ିଶା ବାସୀ ମଧ ସ୍ୱଇଚ୍ଛାରେ ନିଜ ପୋଷାକପତ୍ର ଖୋଲି ପୁରୀ ବଡ଼ଦାଣ୍ଡରେ ପୋଡ଼ିଥିଲେ । କିନ୍ତୁ ବିଲାତ ଜିନିଷ ପାଇଁ ସମାଜରେ ଆଦର ଊଣା ନଥିଲା । ଏ କ୍ଷେତ୍ରରେ ଇଂରାଜୀ ପାଠୁଆ ବାବୁମାନେ ଥିଲେ ସର୍ବାଗ୍ରେ । ଇଚ୍ଛା ଥାଉ ବା ନଥାଉ ସତ୍ୟାଗ୍ରହୀମାନେ ବାଧ ହୋଇ ବିଦେଶୀ ପଦାର୍ଥ ବର୍ଜନ କରିଥିଲେ । ଏଇ କଥାକୁ ଲକ୍ଷ୍ମୀକାନ୍ତଙ୍କ ମାନସ ସନ୍ତାନ ଛାତ୍ର ଅସହଯୋଗୀଟି କହିଛି, "ମୋର ପିନ୍ଧାଥିଲା ବିଲାତି ଧୋତି, ପଞ୍ଜାବୀ – ତାକୁ ସବୁ ଅଗ୍ନିରେ ଉଖାଇ ଦେବାକୁ ହେଲା । ତତ୍‌କ୍ଷଣାତ୍ ନୂଆ ଭେକ ଧାରଣ କଲୁଁ । କେବଳ ଲଣ୍ଡା ହେବାକୁ ପଡ଼ି ନାହିଁ । ଆମର ବାରିଷ୍ଟରୀ ଛାଞ୍ଚ ଟୋପର ବାଳକଟା ରହିଗଲା ।"ଭାରତୀୟମାନଙ୍କର ପରମୁଖାପେକ୍ଷୀ ଆଚରଣ ତ ପ୍ରାକ୍ ସ୍ୱାଧୀନତା କାଳରୁ । ଅଧୁନା ସର୍ବତ୍ର ବିଲାତି ବାସ୍ନା; ଇଂରାଜୀ ଠାଣିମାଣି, ଆଦବ କାଇଦା । ଏ ଯାଏ ଆମେ ବୁଝିଲୁନି; ବିଦେଶୀ ଭାବ ମଣିଷକୁ ବିଦେଶୀ କରେନି, ବିଦେଶୀ ପୋଷାକ ବିଦେଶୀ କରେ । ଖଦଡ଼, ଧୋତି, ପୋଷାକ ଏବେ ତ ସାତ ସପନ । ଗାନ୍ଧିଜୟନ୍ତୀ, ସ୍ୱାଧୀନତା ଦିବସରେ ଏସବୁ ପେଡ଼ିରୁ ବାହାରେ । ଅରଟ, ଚରଖାରେ ସୂତାକଟା ଯାଏ । ନେତାଏ ଭାଷଣ ଦିଅନ୍ତି, ମୁଣ୍ଡରେ ଗାନ୍ଧି ଟୋପି । କେତେ କ'ଣ ଗାନ୍ଧିଜୀଙ୍କ କଥା ବଖାଣନ୍ତି । ଦେଶପ୍ରେମ ପାଇଁ ଆହ୍ୱାନ ଦିଅନ୍ତି । ଏକଥା ସବୁ କଥାରେ; ଫଳ ବିପରୀତ । ଗାନ୍ଧିଜୀଙ୍କ ସ୍ୱଦେଶୀ ଚିନ୍ତାଧାରାରୁ କାଣିଚାଏ ଲେଖେଁ ଗ୍ରହଣ କରିଥିଲେ ଦେଶଟା ସୁନା ହୋଇଯାଆନ୍ତା; ଫେରି ଆସିଥାନ୍ତା ରାମରାଜ୍ୟ ।

ସତ୍ୟାଗ୍ରହୀଙ୍କର ଆଶ୍ରମରେ ରହଣି । ନୂଆମାନଙ୍କର ବିଚିତ୍ର ଅନୁଭୂତି । ଦେଶ ପଛେ ଆଜାଦ୍ ନ ହେଉ, ସେମାନେ କିନ୍ତୁ ବନ୍ଧନ- ମୁକ୍ତ । ସେଠାରେ କେହି ରାଜା ଅବା ପ୍ରଜା ନୁହେଁ; ଗୁରୁ କିଏ କାହାର ନୁହେଁ, ଶିଷ୍ୟ ନାହାଁନ୍ତି - ସମସ୍ତେ ସ୍ୱାଧୀନ । ତଥାପି ବଡ଼ବଡ଼ିଆ, ବୟସ୍କ ଅସହଯୋଗୀମାନେ ନବାଗତମାନଙ୍କୁ ବୁଝାସୁଝା କରନ୍ତି । ନୀତିକଥା କହନ୍ତି । ଅସହଯୋଗ ପାଇଁ ଲୋଡ଼ା ନିଷ୍ଠା, ସାହସ ତ ଅନିବାର୍ଯ୍ୟ, ସାଧୁତା ଜରୁରୀ - ଏମିତି କେତେ କ'ଣ ? ପିଲା ସତ୍ୟାଗ୍ରହୀମାନେ ଶୁଣନ୍ତି । ଆଗକୁ କଣ୍ଟକିତ ପଥ । ଚାଲିବାକୁ ପ୍ରସ୍ତୁତ ହେବା ଆବଶ୍ୟକ । ସବୁକଥା ନବୁଝି ପାରିଲେ ବି ସେମାନଙ୍କ ମଧ୍ୟରେ ଉତ୍ସାହ ବଢ଼େ । ପୁରୁଖା ଅସହଯୋଗୀଏ ସେମାନଙ୍କୁ ସାବାସି ଦିଅନ୍ତି । ଚାରିଆଡ଼େ ବାହାବା ହୁରି ପଡ଼େ । ଖବର କାଗଜରେ ନାଁ ବାହାରେ; ସେମାନଙ୍କ ଆବେଗ ବହୁଗୁଣିତ ହୁଏ । ସବୁଆଡ଼େ ଆଦର ଗୌରବ । ଅଧୁନା ସେଇ ପ୍ରଚାର ସର୍ବସ୍ୱ ଚିନ୍ତନ । ସାହିତ୍ୟସଭା, ଶୋକସଭା, ଜୟନ୍ତୀ, ହରତାଳ - ପାଞ୍ଚ ଦଶ ଜଣ ନଥାନ୍ତୁ ପଛକେ, କ୍ୟାମେରା ମ୍ୟାନ୍ କୌଶଳରେ ଫଟୋଉଠାନ୍ତି । ଖବର ବାହାରେ, ବହୁ ଜନ ସମାଗମ, ଏପରିକି ଜନାକୀର୍ଣ୍ଣ ଆଦି ଶବ୍ଦ ବ୍ୟବହାର କରିବାକୁ ଅନେକତ୍ର କୁଣ୍ଠା ପ୍ରକାଶ ପାଏନି । ପ୍ରଚାରରେ ବିଶ୍ୱାସୀ, ଗାନ୍ଧି ଯୁଗରେ ଥିଲେ; ଏବେ ମଧ୍ୟ ଅଛନ୍ତି । କିନ୍ତୁ ସ୍ୱୟଂ ଗାନ୍ଧି ବାକ୍ୟ ନୁହେଁ, କର୍ମରେ ଗୁରୁତ୍ୱ ଦେଉଥିଲେ । ଅଯଥା ପ୍ରସାର ପ୍ରଚାରକୁ ନାପସନ୍ଦ କରୁଥିଲେ । ଏହା ସତ୍ତ୍ୱେ; ଆତ୍ମ ପ୍ରଶସ୍ତି ପ୍ରଚାର ସେବେ ଥିଲା; ଏବେ କିନ୍ତୁ ଏହାର ମାତ୍ରା ଅଧିକ ।

ଅସହଯୋଗ ପରିଚାଳନା ପାଇଁ ଗାନ୍ଧିଜୀ ତିଲକ ସ୍ୱରାଜ ପାଣ୍ଠି ଗଠନ କଲେ । ବାଧ୍ୟବାଧକତା ନୁହେଁ, ଯିଏ ଯାହା ସ୍ୱଇଚ୍ଛାରେ ଦାନ କରିବେ, ଭିକ୍ଷାବୃତ୍ତ ସମ୍ପୂର୍ଣ୍ଣ ମନା । କିନ୍ତୁ ଫଳ ହେଲା ଓଲଟା । ନବୀନ ସତ୍ୟାଗ୍ରହୀ ଚାନ୍ଦା ଆଦାୟ ପାଇଁ ନିଜ ନିଜ ବୁଦ୍ଧି ଖଞ୍ଜିଲେ । କାନ୍ଧରେ ତାଙ୍କର ଝୁଲାମୁଣି । ମହାନ ଐତିହ୍ୟ ସମ୍ପନ୍ନ ଜାତିଟା କ୍ରମେ ଅବାଟ ଆଡ଼େ ମୁହାଁଇଲା । ଆପଣାର ଖେଦକୁ ଲକ୍ଷ୍ମୀକାନ୍ତ ପ୍ରକାଶ କଲେ ଛାତ୍ର ସତ୍ୟାଗ୍ରହୀ ମାଧ୍ୟମରେ । ଚାନ୍ଦା ଆଦାୟ କୌଶଳ ସମ୍ପର୍କରେ ପିଲାଟି କହେ, "ଆମ ଗାନ୍ଧି ଟୋପି ଓ ଖଦଡ଼ ପୋଷାକ ଦେଖିଲେ ଲୋକେ ବୁଝନ୍ତି । ନ ବୁଝିଲେ ତାଙ୍କୁ ସ୍ୱରାଜ ଭିକ୍ଷା କହି ବୁଝେଇ ଦେଉଁ । ସମସ୍ତେ ମୁଠାଏ ମୁଠାଏ ପକାଇ ଦିଅନ୍ତି । ବଜାରରେ ଦୋକାନୀମାନେ କିଏ ଚାଉଳ, କିଏ ଡାଲି, କିଏ ପନିପରିବା, କିଏ ପିଆଜ, ଲଙ୍କାମରିଚ ଦିଅନ୍ତି । କେହି

କେହି ପଇସା ପକାନ୍ତି । ଏହା ହେଲା ମୁଷ୍ଟି ଭିକ୍ଷା ।” ଏହା ବାଦ୍ ସ୍ୱତନ୍ତ୍ର ଭିକ୍ଷା । ଏଥିପାଇଁ ନାନା ପ୍ରକାର ଫନ୍ଦିଫିକର । ଆଜି ତିଳକ ଜୟନ୍ତୀ-ଦିଅ ଚାନ୍ଦା, ଆଜି ଗାନ୍ଧି ଦିବସ - ଦିଅ ଚାନ୍ଦା - ଏମିତି ଅମୁକ ଜେଲ ଗଲେ, ଅମୁକ ଜୀ ଆସିବେ, ଅମୁକ ଜାଗାରେ ସମ୍ମିଳନୀ ହେବ, ତମୁକ ଜାଗାରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ହେବ, ଅରଟ କିଣା ହେବ, ଖଦି ପ୍ରଚାର - ସବୁ ପାଇଁ ଚାନ୍ଦା । କେହି କେହି ନଦେଲେ ତରୁଣ ଅସହଯୋଗୀମାନେ ଗୋଡ଼ତଳେ ପଡ଼ିଯାନ୍ତି, କାକୁତି ମିନତି କରନ୍ତି; ଅଦିଆମାନଙ୍କ ମନ ତରଳିଯାଏ । ପକେଟ୍ ଉଣ୍ଡାଳି ସୁକିଟିଏ ଅବା ଆଠଣିଟେ ପକାଇ ଦିଅନ୍ତି ଝୁଲାରେ । ଚାନ୍ଦା ଆଦାୟ ହୁଏ; ନାମକୁ ମାତ୍ର ହିସାବଲେଖା କାଗଜ ପେନ୍ସିଲରେ । କେହି ତନଖି ଅବା ହିସାବ ନିଏନି । ସୁଧାର ପିଲାଏ ପାଣ୍ଠିକୁ ସବୁ ଦେଇ ଦିଅନ୍ତି । ବଦ୍‌ମାସିଆଙ୍କ ହାତ ଚିକ୍‌କଣ ହୁଏ । ଆପଣା ଇଚ୍ଛା ମୁତାବକ ଦିଅନ୍ତି; ଅବଶିଷ୍ଟରେ ବଦ୍‌ଖର୍ଚ୍ଚ କରନ୍ତି । ପ୍ରାକ୍ ସ୍ୱାଧୀନତା କାଳରେ ଗୋଟେ ବଡ଼ ଭୟଥିଲା । ଯଦି ନାଲି ପଗଡ଼ିଆଙ୍କ ହାବୁଡ଼େ ପଡ଼ିଲ, ସେମାନଙ୍କ ବେତେ ଦି ବେତରେ ପିଲାଏ ସାବାଡ଼ । ଗାନ୍ଧିପରା କହିଥିଲେ ପୋଲିସ ମାଡ଼ ଫୁଲ ଚନ୍ଦନ, ଜେଲଖାନା ତୀର୍ଥାଳୟ । ଦେହ ଦରଜ ସିନା ହୁଏ; ପିଲାଙ୍କର କିନ୍ତୁ ଚାନ୍ଦାଆଦାୟ ନିଶା କମେନି ।

ଗାନ୍ଧିମହାତ୍ମା,କେଡ଼େ ସୁନ୍ଦର, ଗଠନମୂଳକ ପ୍ରସ୍ତାବଟେ ଦେଇଥିଲେ; କିନ୍ତୁ କାର୍ଯ୍ୟକାରୀ କଳାବାଲା ଏହାର ଅପପ୍ରୟୋଗ କଲେ । ସେବେକାର ଚାନ୍ଦା ମୁକ୍ତି ସଂଗ୍ରାମ ପରିଚାଳନା ପାଇଁ, ଯଦିଓ ଏଥିରେ କିଛି ତ୍ରୁଟି ବିଚ୍ୟୁତି ଥିଲା । ଏବେ କିନ୍ତୁ ଚାନ୍ଦା ଆଦାୟ ଏକ ସଂକ୍ରାମକ ବ୍ୟାଧି । ଜନଜୀବନ ଏଥିରେ ଗୁରୁତର ଆକ୍ରାନ୍ତ । ମାଙ୍କଡ଼ ମଲା, ଷେଣ୍ଢ ଛୋଟା ହେଲା, ଗାଁ ଅଷ୍ଟମ ପ୍ରହରୀ, ଦୋଳ ମେଳଣ, ଖୁଦୁରୁକୁଣୀ ଭସାଣି - ସବୁ ପାଇଁ ଚାନ୍ଦା । ପୂଜାପାର୍ବଣ କଥା ଅଲଗା । ମୋଟା ଅଙ୍କର ଚାନ୍ଦା ଆଦାୟ ହୁଏ, ଜୋର ଜୁଲମ କରାଯାଏ । ସାଇ ଚାନ୍ଦାଭେଦାରେ ସିନା ଦେବୋପାସନା ଚଳିଯିବ, ମଉଜ ମଜଲିସ ପାଇଁ ତ ଟଙ୍କା ଦରକାର । ଆବଶ୍ୟକୀୟ ପାଣ୍ଠିତକ ବାହାରୁ ସଂଗ୍ରହ କରିବାକୁ ପଡ଼େ; କଳେ ବଳେ ଛଳରେ । ସ୍ୱାଧୀନତା ପୂର୍ବରୁ ପୁଲିସକୁ ଲୋକେ ଡରୁଥିଲେ, ଗର୍ଭବତୀ ବାଘୁଣୀ ବାଟ ଛାଡ଼ି ଦେଉଥିଲା ।  ଅଧୁନା ଯୁଗ ବଦଳିଗଲାଣି । କେହି ସଚ୍ଚା ଅଫିସର ଚାନ୍ଦା ଆଦାଳିଙ୍କୁ  ଧରିଆଣିଲେ ଫୋନ୍ ପରେ ଫୋନ୍ । ପିଲାଏ ଭୋଗବାଣ୍ଟୁଥିଲେ, ଦେବୀଙ୍କ ପ୍ରସାଦ - କିଏ ଟଙ୍କା, ଦି'ଟଙ୍କା ଥାଳିରେ ପକେଇ ଦେଲା, ଏଇଟା ଏଡ଼େ

ବଡ଼ ଅପରାଧ; ଛାଡ଼ି ଦିଅ । ମାନିଲେ କ୍ଷମତାଧାରୀଏ ଖୁସ୍, ନମାନିଲେ ମାଲକାନାଗିରି ଅବା ମାଓପ୍ରବଣ କୋରାପୁଟ ବଦଳି । ତଥାପି ନିର୍ଭୀକ ପୋଲିସବାଲା ଆପଣାର କର୍ତ୍ତବ୍ୟ ପାଳନ କରନ୍ତି । ତା' ନ ହୋଇଥିଲେ ଋଗ୍ଣ ବ୍ୟାଧିଗ୍ରସ୍ତ ସମାଜ ସମ୍ପୂର୍ଣ୍ଣ କଳଙ୍କିତ ହୋଇ ଯାଆନ୍ତାଣି ।

ଗାନ୍ଧିଜୀଙ୍କ ସାଧାସିଧା ଚଳଣି । ତାଙ୍କ ଆଦର୍ଶ ଜୀବନ ପ୍ରତି ଭାରତବାସୀଙ୍କ ସମ୍ମାନବୋଧ ବୃଦ୍ଧି ହେଲା । କେହି କେହି ତାଙ୍କୁ ଦେବତା ମନେକଲେ । ଏହାର ସୁଯୋଗ ନେଇ ଦଳେ ଖଦଡ଼ଧାରୀ ଫାଇଦା ଉଠାଇଲେ । ସେତେବେଳେ ନେଉଥିଲେ; ଆଜି କାଲି ନେଉଛନ୍ତି । ଧୋବ ଧଉଳିଆଏ ମଳି ମୁଣ୍ଡିଆଙ୍କୁ ଭୁଆଁ ବୁଲଉଛନ୍ତି । ଏ କଥାକୁ ମଧ୍ୟ ଲକ୍ଷ୍ମୀକାନ୍ତ ବର୍ଣ୍ଣନା କରିଛନ୍ତି, "ଉର୍ବର ମସ୍ତିଷ୍କ ନେତାମାନେ ସାଧାରଣ ଲୋକଙ୍କ ମନରେ ଗାନ୍ଧୀ ଭାବନା ଉଦ୍ରେକ ଓ ପୁଷ୍ଟ କରିବା ପାଇଁ କେତେଗୁଡ଼ିଏ ଅଜଗୁବି ଗଳ୍ପ ଉଦ୍ଭାବନ କଲେ ।" ନୂତନ ଅସହଯୋଗୀମାନେ ଏଥିରେ ରଙ୍ଗ ବୋଳିଲେ । କାହା ପୁଅକୁ ସାପ କାମୁଡ଼ିଲା, ଗାନ୍ଧି ନାଁ ଧରି ତିନିଥର ଫୁଙ୍କିଦେଲା, ପୁଅ ଉଠି ବସିଲା । ହରତାଳ ଦିନ କିଏ ହଳ କରୁଥିଲା, ତା ବଳଦ କଛଡ଼ି ହେଇ ପଡ଼ିଲା - ଗାନ୍ଧିଙ୍କୁ ଓଳଗି କଲାରୁ ତା' ବଳଦ ଉଠିଲା । କାହାକୁ କୁହାଗଲା ତୁ ଅମକେଇ ଅପରାଧ କରିଛୁ; ଆଶ୍ରମରେ କିଛି ପକା, ସବୁ ପାପ ଯିବ - ଏମିତି ପ୍ରଚାର ଚାଲିଲା । ଗାନ୍ଧି ଠାକୁର, ଗାନ୍ଧି ଠାକୁରାଣୀ, ଗାନ୍ଧିସିଦ୍ଧ, ଗାନ୍ଧିମେଳା ପ୍ରଭୃତି କେତେ କ'ଣ ନାଁ ଦିଆଗଲା । ସ୍ୱାମୀ, ପିଲାଙ୍କ ମଙ୍ଗଳ ପାଇଁ ସ୍ତ୍ରୀମାନେ ଗାନ୍ଧିଙ୍କୁ ଭୋଗ ମନାସିଲେ । କେହି ସତ୍ୟାଗ୍ରହୀ, "ଆହା କାହାର ଦୁଧଖିଆ ପିଲାଗୁଡ଼ିକ କେତେ କଷ୍ଟ ପାଉଛନ୍ତି ଯେ-ଏମିତି କହି ଘର ଆଡ଼େ ଭିତରକୁ ପଶି ପଇସା, କଉଡ଼ି, ଗହଣା ଗାଣ୍ଠି ଅନେକ ରକମର ମାରି ଆଣିବାକୁ ଲାଗିଲେ ।" ଏ ପ୍ରକାର ଚୌର୍ଯ୍ୟବୃତ୍ତିକୁ ବିପକ୍ଷବାଦୀମାନେ ନିନ୍ଦାକଲେ, ଏପରିକି ଏମାନଙ୍କର ନିର୍ଦ୍ଦୋଷ ବାପା, ଗୋସବାପାଙ୍କ ଠାରୁ ଆରମ୍ଭ କରି ମା' ଭଉଣୀଙ୍କ ସଙ୍ଗରେ ଘନିଷ୍ଠ ସମ୍ପର୍କ ଲଗାଇ ସମ୍ବର୍ଦ୍ଧନା କଲେ । ହାତ ଓଠ ଧରି ନେହୁରା, ଖୋସାମତ, ବରାମତ କରି - କାହାକୁ ଭାଇ, କାହାକୁ ଦାଦା, କାହାକୁ ବାପା ସମ୍ବୋଧନ କରି ସେମାନଙ୍କ ଗୋଡ଼ତଳେ ପଡ଼ିଯାଆନ୍ତି କୋମଳମତି ବାଳକମାନେ । ପିଲାମାନେ, ଭୁଲ ଭଟକା କରିଦେଇଛନ୍ତି - କ୍ଷମା ମିଳିଯାଏ ।

ଗାନ୍ଧିଯୁଗରେ କାହିଁକି; ଏହାପୂର୍ବରୁ ଜନଜୀବନରେ ଅର୍ଥଲାଳସା ଥିଲା । ସମ୍ପ୍ରତି ଏହା ଉଗ୍ରରୂପ ଧାରଣ କରିଛି । ଅସହଯୋଗୀଏ ହାତ ଓଠ ଧରି ମାଗୁଥିଲେ । ଏକଥା କ'ଣ ଗାନ୍ଧି କହିଥିଲେ ? ଗୋଟେ ଜାତିର ଯଦି ନୈତିକ ଅଧୋପତନ ହୁଏ; ତାହା ମହାବିପତ୍ତିକୁ ଡାକି ଆଣେ । ଗାନ୍ଧି ଆଦର୍ଶକୁ ବିକି ଭାଙ୍ଗି ଖାଉଥିବା ଦେଶବାସୀଙ୍କ ଚରିତ୍ରିକ ସ୍ଖଳନ ପାଇଁ କ'ଣ ତାଙ୍କ ଆତ୍ମା ଦୁଃଖ ପାଉନଥିବ !

(୩)

ଅନୁକୂଳ ଜଳବାୟୁ ବୀଜଟିର ଅଙ୍କୁରୋଦ୍‌ଗମରେ ସହାୟକ ହୁଏ; କିନ୍ତୁ ବନ୍ଧ୍ୟାଭୂମିରେ ବୀଜବପନ ନିଷ୍ଫଳ ହୁଏ । ଅନୁରୂପ କଥାଟି ଅସହଯୋଗ ଆନ୍ଦୋଳନରେ ପରିଲକ୍ଷିତ ହେଲା । ଆନ୍ଦୋଳନ ପାଇଁ ଉପଯୁକ୍ତ ପରିବେଶ ଭାରତରେ ସୃଷ୍ଟି ହୋଇନଥିଲା । ଏଣୁ ଅସହଯୋଗର ସଫଳତା ତୁଳନାରେ ବିଫଳତା କିଛି କମ୍ ନୁହେଁ । ଏହା ସତ୍ତ୍ୱେ; ଏ ପ୍ରକାର ସର୍ବଭାରତୀୟ ମୁକ୍ତିସଂଗ୍ରାମ ଜାତିପ୍ରେମ-ସଞ୍ଚାର କଲା; ଏଥିରେ ଉଦ୍‌ବୁଦ୍ଧ ହେଲେ ଅନେକ ଭାରତୀୟ । ଆଉ ଗୋଟେ ଗୋଷ୍ଠି ଜାତୀୟତାବାଦରେ ଆର୍ଦ୍ର ହେବାପରି ଅଭିନୟ କଲେ । ଏକ ବିପରୀତ ଧର୍ମୀ ରାଜନୀତିକ ସ୍ଥିତିରେ ସଚ୍ଚୋଟ ସତ୍ୟାଗ୍ରହୀଟିର ଆତ୍ମାର କଥାଟି ଲକ୍ଷ୍ମୀକାନ୍ତ ଉଲ୍ଲେଖ କରିଛନ୍ତି । ନୂଆକରି ଆନ୍ଦୋଳନରେ ଯୋଗଦେଇଥିବା ଛାତ୍ରଟି କହିଛି, "ମୁଁ ଜନନୀ ଜନ୍ମଭୂମିର ଉଦ୍ଧାର ନିମନ୍ତେ, ଦେଶର ସ୍ୱାଧୀନ ବୈଜୟନ୍ତୀ ଉଡ଼ାଇଛି; ଭାରତ ମାତାର ଦୁର୍ଦ୍ଦଶା ମୋଚନ ପାଇଁ ଦୁନ୍ଦୁଭି ନାଦରେ ଜଗତ କମ୍ପାଉଛି, ସମଗ୍ର ଦେଶଟାକୁ ପରାଧୀନତା - ସମୁଦ୍ର ପାର କରାଇବା ସକାଶେ କର୍ଣ୍ଣଧାର ରୂପରେ ବୋଇତ ଘେନି ଛିଡ଼ା ହୋଇଛି ।" ଏତାଦୃଶ ଆତ୍ମବିଶ୍ୱାସ, ଜାତିପ୍ରେମ ଅନେକ ଅସହଯୋଗୀଙ୍କୁ ଜଣେ ଜଣେ ସ୍ୱଚ୍ଛ ଦେଶଭକ୍ତ କରିବାରେ ସହାୟକ ହୋଇଛି - ଏହା ଅନସ୍ୱୀକାର୍ଯ୍ୟ ।

ଅସହଯୋଗର ଅନ୍ୟତମ ଦିଗ ପିକେଟିଂ । ଏହାର ଲକ୍ଷ୍ୟ ହେଲା ବିଦେଶୀ ଦ୍ରବ୍ୟ କିଣାରୁ ଲୋକଙ୍କୁ ନିବର୍ତ୍ତାଇବା, ନିଶା ପଦାର୍ଥ ବିକ୍ରୟ ବନ୍ଦ କରିବା । ବଡ଼ ବଡ଼ ବଜାର, ବଡ଼ରାସ୍ତା ଛକ ଏହାର କର୍ମସ୍ଥାନ । ହରତାଳକାରୀମାନେ ଦଳ ଦଳ ହୋଇ ପିକେଟିଂ କଲେ ବିଭିନ୍ନ ସ୍ଥାନରେ । ପ୍ରତିଦଳରେ ଜଣେ ଜଣେ ଦଳପତି । ଅସହଯୋଗୀଏ

ଦୋକାନୀଙ୍କୁ ବୁଝାସୁଝା କଲେ, "ଭାଇ ତୁମେ ଆଉ ଅପବିତ୍ର ବିଦେଶୀ ଜିନିଷ ବିକନାହିଁ ।" ଏ କଥାକୁ କିଏ ଶୁଣେ, ଆଉ କିଏ ନଶୁଣିଲା ପରି ହୁଏ । ସତ୍ୟାଗ୍ରହୀମାନେ ତ ଗାନ୍ଧିଙ୍କ ଛଟ । ଏମାନଙ୍କୁ ଜୋର ଜବରଦସ୍ତି କରିବା ମନା । ପ୍ରଥମେ ସାକୁଲା ସାକୁଲି; ନହେଲେ ଅମୋଘ ଅସ୍ତ୍ର ପ୍ରୟୋଗ । ଗ୍ରାହକମାନଙ୍କୁ ଘଉଡ଼ାଇ ଦିଆଯାଏ । ହରତାଳକାରୀଙ୍କ ଏ ପ୍ରକାର କୌଶଳ ଦୋକାନୀମାନଙ୍କୁ ହନ୍ତସନ୍ତ କଲା । ସେମାନେ ଢେର କ୍ଷତି ସହିଲେ । କିନ୍ତୁ ଷୋଳକଳା ଗୁଣିଆକୁ ବତିଶ କଳା ଡାହାଣୀ ପରି ନିଶାବେପାରୀ ମାନେ ଅସହଯୋଗୀଙ୍କୁ ବୁଦ୍ଧିରେ ଟପିଗଲେ । ବିଦେଶୀ ଦ୍ରବ୍ୟ ବିକ୍ରି ଜନିତ ଲାଭର ମୋହକୁ ଦୋକାନୀ ଛାଡ଼ିପାରିଲେନି; ନୂଆ ନୂଆ ଉପାୟ ମାନ ଅବଲମ୍ବନ ପୂର୍ବକ କେତେକ ଅସହଯୋଗୀଙ୍କୁ ହାତ କଲେ । ବେଳ ଉଣ୍ଡି ଦଳପତିଙ୍କ ହାତରେ ପାଞ୍ଚ ଦଶ ସ୍ୱରାଜ ଚାନ୍ଦା ଗୁଞ୍ଜିଦେଲେ; ବିଭିନ୍ନ ସମୟରେ ଦାମୀ ଜିନିଷପତ୍ର ମଧ୍ୟ ମିଳିଲା । ବାଳ-ସତ୍ୟାଗ୍ରହୀମାନଙ୍କୁ ସନ୍ତୁଷ୍ଟ କରାଗଲା ନୂଆ ଢଙ୍ଗରେ । ସେମାନଙ୍କୁ ମଧ୍ୟ କେତେ ପ୍ରକାର ପଦାର୍ଥ ମିଳିଲା । ଏଥିରେ ଥାଏ ଲଜେଞ୍ଚ, ଜେଲି, ବିସ୍କୁଟ ପ୍ରଭୃତି ଖାଇବା ମାଲ୍ ପ୍ରଧାନ । ଆରିଶି, ବ୍ରୁଶ୍, ଏସେନ୍‌ସ, ଚିଠି କାଗଜ, କଲମ, ସିଗାରେଟ ମଧ୍ୟ ମିଳେ । ଏହା ବାଦ୍ ଅଧିକ ଜିନିଷ ଲୋଭରେ ପିଲାମାନେ ଅଭିନବ ଉପାୟ ମାନ ବାହାର କଲେ । କେହି କିଣିଥିବା ବିଦେଶୀ ଲୁଗାପଟା ଫିଙ୍ଗିବାକୁ ଅମଙ୍ଗ ହେଲେ, ଜଣେ ଦି ଜଣ ତାଙ୍କ ଗୋଡ଼ ଧରି ପକାନ୍ତି । ଅନ୍ୟମାନେ ଜିନିଷତକ ଟାଣି ନେଇ ଫିଙ୍ଗି ଦିଅନ୍ତି; ଲୁଗାପଟାରେ ନିଆଁ ଲଗେଇ ଦିଅନ୍ତି । କିନ୍ତୁ ଦାମୀ ପଦାର୍ଥକୁ ସେମାନେ କୌଶଳରେ ଗୋଟେଇ ନେଇ ଯାଆନ୍ତି । ଏ ପ୍ରକାର ଅସତ୍ କର୍ମକୁ ଅନ୍ୟମାନେ ନିନ୍ଦାକଲେ । କାନ୍ତକବି ମଧ୍ୟ ପିକେଟିଂକୁ ପକେଟିଂ କହିବାକୁ ପଶ୍ଚାତପଦ ହୋଇନାହାନ୍ତି ।

ମଦଦୋକାନ ଆଗରେ ଚାଲିଲା ପିକେଟିଂ । ବାନର ସେନାମାନେ ଏଥିରେ ଅଂଶଗ୍ରହଣ କଲେ । ସେମାନେ ମାଦକ ଦ୍ରବ୍ୟ ସେବନ ନ କରିବା ପାଇଁ ନିଶାଖୋର ମାନଙ୍କୁ ନେହୁରା ବାଉରା ହୁଅନ୍ତି । କେହି ନଶୁଣିଲେ ପରେ ଜବରଦସ୍ତି କରନ୍ତି । ଫଳରେ ନିଶାଦ୍ରବ୍ୟ ପ୍ରକାଶ୍ୟରେ ବିକ୍ରି ହ୍ରାସ ପାଇଲା, କିନ୍ତୁ ଚୋରା ବେପାର ଚାଲିଲା । ନିଶାଳିମାନେ ମଧ୍ୟ ଅଧିକ ପଇସା ଦେଇ କିଣିଲେ । ଅପରପଟେ ମଦଦୋକାନୀ ହରତାଳକାରୀ ମାନଙ୍କୁ ବଶ କରିବା ପାଇଁ ନୂଆ ଫନ୍ଦି କାଢ଼ିଲେ । ସେମାନଙ୍କ ମଧ୍ୟରେ ଥିବା କେତେକ ବଜାରୀ

ଟୋକାଙ୍କ ସହିତ ତାଙ୍କର ଭିତିରି ସମ୍ପର୍କ ବଢ଼ିଲା । ଆଶ୍ରମ ପାଇଁ ମଧ୍ୟ ଆବଶ୍ୟକ ଭାଙ୍ଗର ଅଭାବ ରହିଲାନି । ସାଙ୍ଗ ଦୋସ୍ତିରେ କେହି ମଦ ଦୋକାନ ଆଡ଼େ ବୁଲିଗଲେ ଖାଇ ଖୋରାକି ପୋଲାରେ ମିଳେ । ଏମାନଙ୍କୁ କେହି ବୟସ୍କ ସତ୍ୟାଗ୍ରହୀ ବାରଣ କଲେ ଉତ୍ତର ମିଳେ, "ସେମାନେ ଖାଉଛନ୍ତି, ଆମେ ଏବେ ଦିନେ ଅଧେ ଟିକେ - ଏଇଟା କ'ଣ ଏଡ଼େ ବଡ଼ ପାପ !" କ୍ରମେ ନିଶା ନିବାରଣ ପ୍ରଚେଷ୍ଟା ବିଫଳତା ଆଡ଼େ ଆଗେଇଲା । ଗାନ୍ଧିଜୀଙ୍କ ନିଶାମୁକ୍ତ ସମାଜ ସ୍ୱପ୍ନଟିଏ ହୋଇ ରହିଗଲା ଯାହା ।

ପ୍ରାକ୍ ସ୍ୱାଧୀନତା କାଳରେ ଗୋଟେ ଗୋଷ୍ଠୀ ମଦ୍ୟପାନକୁ ବିଭବ ଭାବେ ଗ୍ରହଣ କଲେ । ଏବେ ତ ସମୟ ବହୁ ଆଗରେ, ଆମ ଶିକ୍ଷା ଦୀକ୍ଷାର ତ ଅଭାବ ନାହିଁ । ଭାରତ ଭଳି ଗ୍ରୀଷ୍ମ ମଣ୍ଡଳୀୟ ଜଳବାୟୁରେ ଉଷ୍ଣପ୍ରଦାୟକ ପାନୀୟର ଆଦୌ ଆବଶ୍ୟକତା ନାହିଁ; ଏକଥା ବା କିଏ ନଜାଣେ ? ଆମେ ତ ଜାଣି ଅଜଣା । ଏବେ ତ ସରକାରୀ ରାଜସ୍ୱର ଅନ୍ୟତମ ବଳିଷ୍ଠ ଉତ୍ସ ଅବକାରୀ ବିଭାଗ । ଟଙ୍କା ପାଇଁ ତ ସବୁ ନାଟ । ସରକାରୀ ସ୍ୱୀକୃତି ପ୍ରାପ୍ତ ମଦଦୋକାନ, କେଉଁଠି ଠିପିଖୋଲା ତ କେଉଁଠି ବନ୍ଦ । ଏ ପରିପ୍ରେକ୍ଷୀରେ ନିଶା ତ୍ୟାଗ ଏକାନ୍ତ ଜରୁରୀ । ତାହା ହେଲେ ମାଦକ ଦ୍ରବ୍ୟ ବିକ୍ରି ଦୋକାନ ତା' ବାଟରେ, ଜନତା  ତାଙ୍କ ବାଟରେ । ନଚେତ୍ ଗାନ୍ଧି କାହିଁକି; ଆଉ କେଉଁ ମାନବ ଅବା ଅତିମାନବ ଦୁର୍ନୀତି , ଭ୍ରଷ୍ଟାଚାର ଅଥବା ଅପସଂସ୍କୃତିକୁ ଲଗାମ ଦେଇ ପାରିବେ ନା ପାରିଛନ୍ତି ?

ଅସହଯୋଗୀଙ୍କୁ ବାନ୍ଧି ରଖିଲା ସ୍ୱରାଜ ପ୍ରାପ୍ତି ଆଶା ଟିକକ । ଯୁବସତ୍ୟାଗ୍ରହୀମାନଙ୍କ ସ୍ୱରାଜକୁ ନେଇ କେତେ କ'ଣ କଳ୍ପନା ଜଳ୍ପନା । ଦେଶ ସ୍ୱାଧୀନ ହେଲେ କିଏ ହେବ କମିଶନର, କିଏ ହାକିମ ହୁକୁମା, କେହି ଇନିସପେକ୍ଟର, ଇନିସ୍‌ପେକ୍‌ଟ୍ରେସ୍ - ଏମିତି ଚାଲିଲା ବିଲୁଆ ବିଚାର । କ୍ଷମତା ଚିନ୍ତା ଘାରିଲା କିଛି ସତ୍ୟାଗ୍ରହୀଙ୍କୁ । ସ୍ୱୟଂ ଗାନ୍ଧିଜୀ କିନ୍ତୁ ଏହାର ଘୋର ବିରୋଧୀ ଥିଲେ । କିନ୍ତୁ ବହୁ ହରତାଳକାରୀ କ୍ଷମତା ନିଶାରେ କ୍ରମେ ସତ୍ୟ, ନ୍ୟାୟ, ଧର୍ମପଥରୁ ବିଚ୍ୟୁତ ହେଲେ । ଏ କଥାକୁ ଅନୁଭବ କଲେ କାନ୍ତକବି । ଗଭୀର ଦୁଃଖରେ ଲେଖିଲେ "ଏ ଆମର କର୍ମ ଉଣା ନୁହେଁ, ଉତ୍କଳ ଜନନୀଙ୍କର କର୍ମ ଉଣା, ଭାରତ ମାତାଙ୍କ କର୍ମ ଉଣା" ।

ଅସହଯୋଗୀଙ୍କର ତିନୋଟି ମୂଳମନ୍ତ୍ର - (୧) ଖଦଡ, ତହିଁ ମଧ୍ୟରେ ଅରଟ- (୨) ହିନ୍ଦୁ ମୁସଲମାନ ମିଳନ; (୩) ଅସ୍ପୃଶ୍ୟତା ନିବାରଣ । ପ୍ରାକ୍ ସ୍ୱାଧୀନତା କାଳରେ

ହିନ୍ଦୁ ମୁସଲମାନ ମିଳନ ପ୍ରସଙ୍ଗ ଉତ୍‌ଥାନ ପୂର୍ବରୁ ବିଚାରବିମର୍ଷ ଅତୀବ ଗୁରୁତ୍ୱପୂର୍ଣ୍ଣ ଥିଲା । ଏଇ ଦୁଇ ଧର୍ମାବଲମ୍ବୀମାନଙ୍କ ଏକତ୍ର ଲଢ଼େଇ ଇଂରେଜ ଶାସନର ବିଲୋପ ସାଧନ କରିବ - ଏ ପ୍ରକାର ଚିନ୍ତନଟି ଉପରେ ଗାନ୍ଧିଜୀଙ୍କ ନିଷ୍ପତ୍ତି ଏକତରଫା ଥିଲା । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ବୌଦ୍ଧ, ଜୈନ - ସମସ୍ତେ ଭାରତମାତାର ସନ୍ତାନ; ସମସ୍ତେ ଭାଇ ଭାଇ । ଏପରି ସ୍ଥଳେ 'ଅମେଳ', 'ଅମେଳ' କହି ପ୍ରକୃତ ଅମେଳକୁ ପାଛୋଟି ଅଣା ଗଲା । ତା'ର ବିଷମ ପରିଣତି ଭୋଗିଲା ଭାରତମାତା ।

ପ୍ରଥମ ମହାସମର ଅନ୍ତ ହେଲା । ଇଂରେଜମାନେ ବିଜୟ ନିଶାରେ ଅନ୍ଧ ପାଲଟିଗଲେ । ଯୁଦ୍ଧରେ ପରାସ୍ତ ତୁର୍କୀର ସୁଲତାନ ବା ଖଲିଫା ପଦ ଉଚ୍ଛେଦ କରିଦେଲେ । ଖଲିଫାଙ୍କୁ ସାରାବିଶ୍ୱର ମୁସଲମାନମାନେ ଆପଣାର ଧର୍ମଗୁରୁ ଭାବେ ସମ୍ମାନ ଦେଉଥିଲେ । ଇଂରେଜମାନଙ୍କ ଅପରିଣାମଦର୍ଶୀ କାର୍ଯ୍ୟ ମୁସଲମାନଙ୍କ ଧର୍ମୀୟ ବିଶ୍ୱାସ ଉପରେ କୁଠାରଘାତ କଲା । ଗାନ୍ଧିଜୀ ସେମାନଙ୍କୁ ସମର୍ଥନ କରିବା ପାଇଁ ହିନ୍ଦୁମାନଙ୍କୁ ଏକଜୁଟ୍ କଲେ । ଚାଲିଲା ତାଙ୍କ ନେତୃତ୍ୱରେ ଖିଲାଫତ ଆନ୍ଦୋଳନ (ନଭେମ୍ବର ୧୪, ୧୯୧୯) । ମୁସଲମାନ ମାନେ ଗାନ୍ଧିଜୀଙ୍କୁ ସମର୍ଥନ ଜଣାଇଲେ । ମାତ୍ର ଏ ପ୍ରକାର ସମର୍ଥନ ବେଶିଦିନ ତିଷ୍ଠି ରହିଲାନି । ମୁସ୍ତାଫା କାମାଲପାଶା ଏକ ନୂଆ ତୁର୍କୀ ଗଠନ କରିବାରେ ବ୍ରତୀ ହେଲେ; ବିପ୍ଳବୀମାନଙ୍କ ଦ୍ୱାରା ସୁଲତାନ ଗାଦିଚ୍ୟୁତ ହେଲେ । ଇଂରେଜମାନେ ମଧ୍ୟ ତୁର୍କୀ ସହ ହୋଇଥିବା ସେଭର ସନ୍ଧିକୁ ପ୍ରତ୍ୟାହାର କରିବାକୁ ସିଦ୍ଧାନ୍ତ ନେଲେ (୧୯୨୨) । ଫଳତଃ ଗାନ୍ଧିଜୀଙ୍କ ଖିଲାଫତ ପ୍ରସଙ୍ଗ ଗୁରୁତ୍ୱ ହରାଇଲା; ହିନ୍ଦୁ ମୁସଲମାନ ମେଣ୍ଟ ଭାଙ୍ଗିଲା । ଚତୁର ଇଂରେଜମାନେ ମୁସଲମାନ ମାନଙ୍କୁ ହାତେଇ ନେଲେ । ସଦ୍‌ଭାବନା ନୁହେଁ, ସାମ୍ପ୍ରଦାୟିକ ଭେଦଭାବ ମୁଣ୍ଡ ଟେକିଲା ।  ଏ ପ୍ରସଙ୍ଗକୁ ନେଇ ଭବିଷ୍ୟତରେ ଏକ ଭୟାବହ ପରିଣତି ହେବ ଯାହା,  ଲକ୍ଷ୍ମୀକାନ୍ତ ଆକଳନ କରିନେଇଥିଲେ । ଏଣୁ ନିଜ ମନକଥା ପଦକ ସେ ଲେଖିଦେଲେ, "ଢେଙ୍ଗୁରା ବଜାଇ, 'ମିଳନ' 'ମିଳନ' ମଳିନ କହି ହୋଇ ଅସଲ ଅମେଳଟାକୁ ଆମେ ଏପରି ଚେଇଁ ଦେଲୁ ଯେ, ତାହା ଆଜି ଫାଟିଯାଇ ବୋଧହୁଏ, ଯାହା କେବେ ହୋଇନଥିଲା ସେହି ଅମେଳଟାକୁ ଚିରଦିନ ସକାଶେ ତିଆରି କରି ଦେଇଛୁଁ । ମୁଁ ଠିକ୍ ବୁଝୁଛି, ଯଦି ଏହି ଅସହଯୋଗ ଆନ୍ଦୋଳନ ଏପରି ଭାବରେ ହୋଇନଥାନ୍ତା, ଆଜି ଭାରତବର୍ଷ ଏହି ହିନ୍ଦୁ ମୁସଲମାନ ରକ୍ତାରକ୍ତି କାଣ୍ଡ ଦେଖିନଥାନ୍ତା ।"

ଆଉ ପାଦେ ଆଗକୁ ଯାଇ କହିଲେ ଅଖଣ୍ଡ ଭାରତ ବିଭାଜିତ ହୋଇନଥାନ୍ତା । କଥାରେ ଅଛି- "ଭାଇ ଠାରୁ ବଳି ବଡ଼ ଭଗାରି ନାହିଁ ।"

ଗାନ୍ଧିଜୀ ସଂସ୍କାରମୂଳକ କାର୍ଯ୍ୟରେ ଅଧିକ ଗୁରୁତ୍ୱ ଦେଉଥିଲେ । ଦୀର୍ଘଦିନ ଧରି ସମାଜରେ ଚଳି ଆସୁଥିବା "ଅସ୍ପୃଶ୍ୟତା" ଭଳି ଘୃଣ୍ୟ ପ୍ରଥାକୁ ସେ ଦୃଢ଼ ବିରୋଧ କଲେ; ଅସ୍ପୃଶ୍ୟତା ନିବାରଣ ପାଇଁ ସଂକଳ୍ପବଦ୍ଧ ହେଲେ । ଏ ପରିପେକ୍ଷୀରେ ସେ 'ହରିଜନ ପତ୍ରିକା' ପ୍ରକାଶ କଲେ । ବିଭିନ୍ନ ରାଜ୍ୟରେ ମଧ ପଦଯାତ୍ରା କରି ସାମାଜିକ ସଚେତନତା ବୃଦ୍ଧି କଲେ । ଏହା ଗାନ୍ଧିଜୀଙ୍କ 'ହରିଜନ ପଦଯାତ୍ରା' । ଓଡ଼ିଶାରେ ମଧ ଏଭଳି ଯାତ୍ରା ସଫଳ ହେଲା । ବହୁ ଉତ୍ସାହୀ ଯୁବକଙ୍କ ଜାତି ଜାତି ମଧରେ ବିବାହ ସମ୍ପନ୍ନ ହେଲା । ଏକାଠି ଭୋଜିଭାତ, ମିଳାମିଶା, ପର୍ବପର୍ବାଣିରେ ଏକତ୍ର ପୂଜାପାଠ କରାଗଲା । ସମାଜରେ ଚଳି ଆସୁଥିବା 'ଅସ୍ପୃଶ୍ୟତା' ଭଳି କୁତ୍ସିତ ପ୍ରଥା କ୍ରମେ ଦୂର ହେବାକୁ ଲାଗିଲା । କିନ୍ତୁ ଦୀର୍ଘଦିନର କୁପରମ୍ପରା ଠାରୁ କେହି କେହି ସତ୍ୟାଗ୍ରହୀ ନିଜକୁ ହଠାତ୍ ଦୂରେଇ ପାରିନଥିଲେ । ସେମାନଙ୍କର ଜାତି ଜାତି ଭିତରେ ମିଳାମିଶା ହେଲା ଉପର ଠାଉରିଆ । ଖିଆଣ ପିଆଣରେ ସିନା ଆତ୍ମିକ ମିଳନ ହୁଏ ! ସେକଥାଟି ହେଲାନି; କିନ୍ତୁ ମଦଭାଟିରେ, ଚମାର ପଲାରେ ଉଭୟଙ୍କ ମିଳାମିଶା । ଏହି କଥାକୁ ପ୍ରକାଶ କରିଛନ୍ତି କାନ୍ତକବି ସତ୍ୟାଗ୍ରହୀଟିର ମୁହଁରେ, "ମୁଁ କେବଳ କାନ୍ଧରେ ହାତ ପକାଇ ଚାଲିଛି । ଦୋସ୍ତିରେ ପଡ଼ି ଥରେ ଅଧେ ଖଜିର ତାଡ଼ି ଚାଖିଛି ।" ସେଠାରେ ସର୍ବେ ଏକାକାର, ଭେଦ ବିଚାର ନାହିଁ । ଏସବୁ ସତ୍ତ୍ୱେ; ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମ ଅସହଯୋଗର ଏକ ଉଲ୍ଲେଖନୀୟ ସଫଳତା – ଏହା ନିର୍ବିବାଦୀୟ ସତ୍ୟଟିଏ ।

ଅସହଯୋଗର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ବଏକଟ୍ । କୋର୍ଟ କଚେରୀ ଚାକିରି, ପଦ ପଦବୀ ବର୍ଜନ । ଗାନ୍ଧିଙ୍କର ଏହି ଆଦର୍ଶରେ ବହୁ ଆଇନଜୀବୀ ନିଜର ବ୍ୟବସାୟ ତ୍ୟାଗ କଲେ, ମୋତିଲାଲ ନେହେରୁ, ସି.ଆର୍. ଦାସ, ରାଜେନ୍ଦ୍ର ପ୍ରସାଦ, ରାଜଗୋପାଳଚାରୀ, ବିଠଲଭାଇ ପଟେଲ, ଜବାହରଲାଲ ନେହେରୁଙ୍କ ପରି ଆହୁରି ଅନେକ ସାରା ଦେଶରେ ସେମାନଙ୍କ ଗୁରୁତ୍ୱପୂର୍ଣ୍ଣ ପେଷା ଛାଡିଲେ । ଗାନ୍ଧି ଫେରାଇଦେଲେ କାଇଜର-ଇ-ହିନ୍ଦ୍ ଉପାଧି, ନେତାଜୀ ସୁଭାଷ ବୋଷ ଛାଡ଼ିଲେ ଆଇ..ସି.ଏସ୍ ପଦବୀ । ଗାଁମାନଙ୍କରେ ପଞ୍ଚାୟତ ଅଦାଲତ ଗଠନ ହେଲା । ଏଣିକି ସବୁ ମାଲି ମକଦମା ଏଇଠି

ସମାଧାନ ହେବ । ଅସହଯୋଗୀ ମାନେ ଏ କାମରେ ଅଣ୍ଟା ଭିଡ଼ିଲେ । ଫୁସୁଲା ଫୁସୁଲି, ହାତ ଓଠ ଧରି ବହୁତ ମକଦ୍ଦମା ଗାଁ ଅଦାଲତକୁ ଆଣିଲେ । କିନ୍ତୁ ମାମଲା ସହଜରେ ତୁଟିଲାନି । ଲୋକେ ଭାବିଲେ ସରକାର ଆଉ କିଏ ? ଏଇ ପଞ୍ଚାୟତ ସମିତିର ସଭାପତି, ସେକ୍ରେଟାରି - ଏଇ ତ ସରକାର । ସତ୍ୟାଗ୍ରହୀମାନଙ୍କ ଆପ୍ରାଣ ଚେଷ୍ଟା ସତ୍ତ୍ୱେ; "ଏଭଳି ଦେଶରେ, ଆଉ ଏ ଓଡ଼ିଆ ଜାତିପରି ଜାତି ଠାରେ କିଛି ବଡ଼ କାମ କରିହେବ ନାହିଁ ।" କେତେ ଆଶା ଥିଲା । ପଞ୍ଚାୟତ ଅଦାଲତ ଗ୍ରାମର ଭଲମନ୍ଦ ବୁଝିବେ, ହାରିଫେରାଦି ଭାଙ୍ଗିବେ, ସବୁକଥା ନିଶାପ କରି ନ୍ୟାୟ ଦେବେ - ତାହା ତ ନୋହିଲା; କେହି କାହା କଥାକୁ ମାନିଲେନି । ରାଜ୍ୟରେ କଳି ସୃଷ୍ଟି ହେଲା, ବାଦ ବିବାଦ ସଂଖ୍ୟା ବଢ଼ିଲା । ରିସ୍‌ପତ ବୁଣାହେଲା । ଗୋଟେ ବର୍ଷ ପରେ ଅବସ୍ଥା ଯଥାପୂର୍ବଂ ତଥା ପରମ୍ । ଲୋକେ ଦଉଡ଼ିଲେ ପୁନଶ୍ଚ ଅଦାଲତକୁ । ବର୍ଷକ ସକାଶେ ସରକାରଙ୍କ କୋର୍ଟ ଫିସ୍ ଯେତିକି କମ୍ ପଡ଼ିଲା, ତହିଁ ଆରବର୍ଷକୁ ଚକ୍ରବୃଦ୍ଧି ସୁଧ ସହିତ ତାହା ଆଦାୟ ହୋଇଗଲା । ମାଲିମକଦ୍ଦମା ଯାହା ଫଇସଲା ହେଲା ତାହା ତ ଗଙ୍ଗାଙ୍କୁ ମାଲୁମ । ତହିଁ ପରେ ସେ ସବୁ ଲୋକଙ୍କ ଠଉଁ ଯେତେ ବୋଲଣା, ଅପମାନିଆ କଥା ଶୁଣିଲେ ତାହା, ଅସହଯୋଗୀଙ୍କ ଛାତି, ଆଉ ମୋଟା ଚମଡ଼ା ପିଠି ବୋଲି ସହିଲେ ସିନା ! ଅଗତ୍ୟା ଆଉ ଉପାୟ ବା କ'ଣ ଥିଲା ?

(୪)

ବଡ଼ ଜୋସ୍‌ରେ ଚାଲିଲା ଅସହଯୋଗ ଆନ୍ଦୋଳନ । ଅହିଂସା, ସତ୍ୟାଗ୍ରହକୁ ପ୍ରାଧାନ୍ୟ ଦିଆଗଲା । ଭିନ୍ନ ଭାବଧାରାର ସ୍ୱାଧୀନତା ସଂଗ୍ରାମୀମାନେ ସବୁ ଚପିଗଲେ । ଦେଶରେ ଏଣିକି ଯାହା ଯେଉଁଠି ହେଲା ସବୁ ଭିତରେ ଅସହଯୋଗୀଏ । ସେମାନଙ୍କ ମଧ୍ୟରୁ ଅନେକ ଆପଣା ହାତରେ ଚଉଦପା । ଦଳେ ଇନ୍ଦ୍ର ଚନ୍ଦ୍ର ମାନିଲେନି । ସେମାନେ ପରା ଗାନ୍ଧିଙ୍କ ଚାଟ, ତାଙ୍କୁ ସାତଖୁଣ୍ ମାଫ୍ ! ଏ ପ୍ରକାର ବେପରୁଆପଣ ଅନେକ ଅଘଟଣକୁ ଡାକିଆଣିଲା । ତନ୍ମଧ୍ୟରୁ କନିକା ପ୍ରଜାମେଳି ଅନ୍ୟତମ । ଏ ସମ୍ପର୍କରେ ମଧ୍ୟ ଲକ୍ଷ୍ମୀକାନ୍ତ ମହାପାତ୍ର ଉଲ୍ଲେଖ କରିଛନ୍ତି ।

ଅସହଯୋଗ ଆନ୍ଦୋଳନ ଚାଲିଲା । କନିକା ଜିଲ୍ଲାରେ ଘଟିଲା ଅଭାବନୀୟ ଘଟଣାଟେ । ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଦ୍ୱାରା ପ୍ରଚଳିତ ବେଠି, ବେଗାରି, ଅତ୍ୟଧିକ ଖଜଣା ଧାର୍ଯ୍ୟ, ରାଜାଙ୍କ ଅନୁପସ୍ଥିତିରେ ରାଜକର୍ମଚାରୀଙ୍କ ମନମୁଖି ଆଚରଣ,

ମାତ୍ରାଧିକ୍ୟ ବଳପ୍ରୟୋଗ ଆଦି ଘଟଣାରେ ଅତିଷ୍ଠ କନିକା ପ୍ରଜା ମେଳି ବାନ୍ଧିଲେ । ସୃଷ୍ଟି ହେଲା ରାଜତନ୍ତ୍ର ବିରୋଧରେ ଏକ ତୀବ୍ର ପ୍ରତିକ୍ରିୟା । କଂଗ୍ରେସ କର୍ମୀଙ୍କ ସହଯୋଗ ତଥା ଉତ୍ସାହ ପ୍ରଜାମାନଙ୍କ ବିରୋଧକୁ ତୀବ୍ରତର କଲା । କଟକ ଜିଲ୍ଲା କଂଗ୍ରେସ ସେକ୍ରେଟାରୀ ଅଟଳ ବିହାରୀ ଆଚାର୍ଯ୍ୟ କନିକା ଘଟଣାର ଅନୁସନ୍ଧାନ ପାଇଁ ଗଲେ । ରାଜାଙ୍କ ସହ ତାଙ୍କର ସାକ୍ଷାତ ଆଲୋଚନା ହେଲା । ରାଜା ମଧ୍ୟ ପ୍ରଜାଙ୍କ କଥା ବୁଝିବାକୁ ପ୍ରତିଶ୍ରୁତି ଦେଲେ । ଏ ପ୍ରକାର ଆଲୋଚନା ପ୍ରଜାମାନଙ୍କ ଉପରେ କୌଣସି ପ୍ରଭାବ ପକାଇ ନଥିଲା । ଏଣେ ଅସହଯୋଗୀମାନେ ପ୍ରଜାଙ୍କୁ ଅଧିକ ଉତ୍ତେଜିତ କରିବାକୁ ଲାଗିଲେ । ସେମାନଙ୍କୁ ଦୃଢ଼ଧାରଣା ଦିଆଗଲା; ବ୍ରିଟିଶରାଜ୍ ଶୀଘ୍ର ଅନ୍ତ ହେବ, ପୋଲିସ୍ ପାଓ୍ୱାରଲେସ୍, କୌଣସି ପରିସ୍ଥିତିରେ ଆଉ ଗୁଳି ଚଳାଇବାକୁ ସାହାସ କରିବେ ନାହିଁ, ରାଜାଙ୍କ ପୋଲିସ ବିରୋଧରେ ଲଢ଼ିବା ପାଇଁ ଗାନ୍ଧିଙ୍କ ସୈନ୍ୟ ରାଞ୍ଚିରୁ କନିକା ଆସୁଛନ୍ତି - ଏ ପ୍ରକାର ଅପପ୍ରଚାର ପ୍ରଜାମାନଙ୍କୁ ବେପରୁଆ କରିଦେଲା । ପରିଣାମରେ ଘଟିଲା ମର୍ମନ୍ତୁଦ ଗୁଳିକାଣ୍ଡ । ଜଣେ କୋର୍ଟପିଅନ, ଦୁଇଜଣ ରାଜ ପିଅନଙ୍କ ସହ ବିଦ୍ରୋହୀମାନଙ୍କର ଧସ୍ତାଧସ୍ତି ହେବା ସମୟରେ ପୋଲିସ୍ ୫ ଜଣଙ୍କୁ ଗିରଫ କଲା । ଉତ୍ୟକ୍ତ ପ୍ରଜାମାନେ ଏମାନଙ୍କୁ ମୁକୁଳାଇବା ପାଇଁ ବଳପ୍ରୟୋଗ କଲେ । ଅବସ୍ଥା ଅଣାୟତ୍ତ ହେଲା । ରକ୍ତମୁଖା ପୋଲିସ୍ ଗୁଳି ଚଳାଇଲେ । ୨ ଜଣ (ବାସୁ ସେଠୀ, ବିସୁନି ମଡୁଆଳ) ନିହତ ହେଲେ, ଅନେକ ଆହତ ହେଲେ । ଶେଷରେ ବିପ୍ଳବର କର୍ଣ୍ଣଧାର ଆନନ୍ଦ ଚନ୍ଦ୍ର ଜେନା ରାଜକୋପର ଶିକାର ହୋଇ ସର୍ବସ୍ୱାନ୍ତ ହେଲେ । ଇଂରେଜ ବାହିନୀ ପ୍ରଜାମେଳିକୁ ଭଣ୍ଡୁର କରିଦେଲେ; କିନ୍ତୁ ଏ ପ୍ରକାର ଘଟଣାର କଳଙ୍କ ଲାଗିଲା ରାଜାଙ୍କ କପାଳରେ ।

ପ୍ରତ୍ୟେକ ରାଜାରାଜୁଡ଼ା, ଜମିଦାରୀ ଶାସନରେ ପ୍ରଜାମେଳି ଏକ ସାଧାରଣ ଘଟଣା; କିନ୍ତୁ କନିକା ପ୍ରଜାମେଳି ସ୍ୱତଃପ୍ରବୃତ୍ତ ଅବା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଅସହଯୋଗକୁ ବିରୋଧ କରିବାରୁ କଂଗ୍ରେସବାଲା ତାଙ୍କ ପାଇଁ ଏ ପ୍ରକାର ଦୁର୍ଭାଗ୍ୟର ବାଟ ସଫା କରିଦେଲେ - ଏବେ ତାହା ଅନୁଧ୍ୟାନ ସାପେକ୍ଷ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ରାଜା ରାଜେନ୍ଦ୍ର ନାରାୟଣ ଥିଲେ ଉତ୍କଳ ସମ୍ମିଳନୀର ଅନ୍ୟତମ କର୍ଣ୍ଣଧାର । ଏଣୁ ସେ ଅସହଯୋଗର ସପକ୍ଷବାଦୀ ନଥିଲେ । ଇଂରେଜ ଶାସକଙ୍କ ସହ ସମ୍ପର୍କ ରଖୁଥିବାରୁ ତାଙ୍କୁ ସର୍ବସାଧାରଣରେ ଅପଦସ୍ତ, ନିନ୍ଦିତ, ହଇରାଣ କରିବାକୁ ଯେମିତି ସଂକଳ୍ପବଦ୍ଧ

ଥିଲେ କେତେକ ପ୍ରଦେଶ କଂଗ୍ରେସ ନେତା । ଉତ୍କଳ କଂଗ୍ରେସ କମିଟିର ବରିଷ୍ଠ ନେତା ମଧୁସୂଦନ ପଟ୍ଟନାୟକ ୧୮ ମାସ କାଳ କନିକାରେ ରହି ଆନ୍ଦୋଳନକୁ ସକ୍ରିୟ କରିଥିଲେ । ଘଟଣାକ୍ରମେ ସେ କେନ୍ଦ୍ରାପଡ଼ା ମାଜିଷ୍ଟ୍ରେଟଙ୍କ ଆଗରେ ଏକ ସତ୍ୟପାଠ କରିଥିଲେ; ସେ ପ୍ରଜାଙ୍କୁ ରାଜାଙ୍କ ବିରୁଦ୍ଧରେ ମତାଉଥିଲେ, ସମସ୍ତ ଅଶାନ୍ତି ମୂଳରେ ଅସହଯୋଗ ଆନ୍ଦୋଳନ ଥିଲା । ଏଥି ପାଇଁ ସେ ଦାୟୀ ବୋଲି ଲିଖିତ ଆକାରରେ ଦେଇଥିଲେ, ଏଥି ସହିତ ଗଭୀର ଚିନ୍ତନସହ ଅସହଯୋଗରୁ ଅବ୍ୟାହତି ନେଇଥିଲେ । ଏଇଠି ଗୋଟେ ଅପ୍ରିୟ ସତ୍ୟକୁ ପ୍ରକାଶ କରିବା ଯଥାର୍ଥ ମନେହୁଏ । କୌଣସି ରାଜତନ୍ତ୍ର ଶାସନରେ ହସ୍ତକ୍ଷେପ ନ କରିବା କଂଗ୍ରେସର ନୀତି ଥିଲେ ମଧ କନିକା ପ୍ରଜା ବ୍ୟାପାରରେ ପ୍ରଦେଶ କଂଗ୍ରେସ କମିଟିର ଅନାବଶ୍ୟକ ଆଗ୍ରହ ତଥା ପ୍ରତ୍ୟକ୍ଷ ଅଂଶଗ୍ରହଣ ଅନେକଙ୍କୁ ଆଶ୍ଚର୍ଯ୍ୟ କରିବା ସ୍ୱାଭାବିକ । ଶେଷରେ କଂଗ୍ରେସ, କନିକା ବିଦ୍ରୋହକୁ ରାଜ ଉତ୍ପୀଡ଼ନ, ଋଷୀ ମୂଲିଆଙ୍କ ମେଳି କହି ନିଜ ମୁଣ୍ଡରୁ ଦୋଷ ଛଡ଼ାଇ ଦେଲା । ମୁକ୍ତିସଂଗ୍ରାମର ଏଇ ଗୁରୁତ୍ୱପୂର୍ଣ୍ଣ ଆଧ୍ୟାୟଟି ଗୋଟେ ପ୍ରଜାମେଳିରେ ସୀମିତ ରହିଗଲା । କଂଗ୍ରେସ ଖାତାରେ ନା ମୁକ୍ତିସଂଗ୍ରାମରେ ଗଣା ହେଲା ଅବା ବାସୁ, ବିସୁନିକୁ ସହିଦ୍ ଘୋଷଣା କରାଗଲା । ଲକ୍ଷ୍ମୀକାନ୍ତ ମଧ ଏ କଥାକୁ ଅନୁଭବ କଲେ । ଆପଣାର ମନକଥାକୁ ବଖାଣିଲେ ସତ୍ୟାଗ୍ରହୀଟି ମୁହଁରେ, "କନିକାରେ ଯେଉଁ ଭୟାବହ କାଣ୍ଡ କାରଖାନା ହୋଇଗଲା, ତାହା ମଧ ଆମର କୀର୍ତ୍ତି । ଆମ ଦଳର କେତେଟା ଅକାଣ୍ଡିଆ ଲୋକଙ୍କ ବୁଦ୍ଧିରେ ପଡ଼ି ସେ ବିଚରା ଗୁଡ଼ାକ ଯେତେ ହଇରାଣ ହରକତ ହୋଇଗଲେ, ତାହା ଭାବିଲେ ଦୁଃଖ ହୁଏ । ସେମାନେ ମନେ କରିଥିଲେ ଜଣେ ଜଣେ ଗାନ୍ଧୀ ହୋଇଯିବେ । କିନ୍ତୁ ଫଳ ହେଲା ଓଲଟା । କନିକାର ଭିତିରିଆ କଥା ଦାଣ୍ଡରେ ପଡ଼ି ହାଟରେ ଗଡୁଛି ।" ଦିନ ଗଲା, ଚିହ୍ନ ରହିଲା । ଅତି ଦୁଃଖରେ ଲେଖକ କହନ୍ତି, "ଯାହା ହେଉ ଆମ ମନରେ ଶାନ୍ତି ଏତିକି ଯେ, ଆମେ ପାଇଛୁଁ ଯେତେ, ଦେଇଛୁ ତା'ର ତିନିଗୁଣ । ଆମେ ଯେଉଁ ଅକ୍ଷୟ ବୀଜ ପୋତି ଆସିଛୁଁ, ଯେତେ ଗଜା ଭାଙ୍ଗିଲେ ମଧ ପୁଣି ଭୂଇଁ ଫୋଡ଼ି ଥରକୁ ଥର ବାହାରୁ ଥିବ ଓ ରାଜା ପ୍ରଜା ଉଭୟଙ୍କୁ ଅନନ୍ତ ଅଶାନ୍ତିରେ ଟଣା ଓଟରା କରୁଥିବ ।" ସ୍ୱଚ୍ଛତା ବ୍ୟତିରେକେ ନେତୃତ୍ୱ ଦିଗହରା ହୁଏ- ଏହି କଥାଟିକୁ ଦେଖାଇ ଦେଇଛନ୍ତି ଲକ୍ଷ୍ମୀକାନ୍ତ ।

ଗାନ୍ଧୀଙ୍କର ଆଉ ଗୋଟେ ଆଦର୍ଶ ବ୍ରହ୍ମଚର୍ଯ୍ୟ ଧାରଣ। ଏହାଦ୍ୱାରା ତେଜ ବୃଦ୍ଧି ହୁଏ, ଶକ୍ତି ସଂରକ୍ଷିତ ହେବା ମଧ୍ୟ ସ୍ୱାଭାବିକ। କେହି ଏ କଥାଟି ପାଳନ କରନ୍ତୁ ବା ନକରନ୍ତୁ ଅସହଯୋଗୀଙ୍କୁ ପାଳନ କରିବାକୁ ପଡ଼ିବ। ବ୍ରହ୍ମଚର୍ଯ୍ୟକୁ ନେଇ ଆଶ୍ରମର ଅନ୍ତେବାସୀ କର୍ମଯୋଗୀମାନେ ଆରମ୍ଭ କଲେ କେତେ କଥା; ନିଜକୁ ସୁହାଇଲା ପରି କହିଲେ, "ଗାନ୍ଧିଙ୍କର କଡ଼ା କଡ଼ା ତାଗିଦ୍ ଥିଲା କି, ସ୍ୱରାଜ ନ ହେଲା ଯାକେ ଜନନୀମାନେ ଗର୍ଭଧାରଣ କରିବେ ନାହିଁ, କି ଜନକମାନେ ସନ୍ତାନ ଉତ୍ପାଦନ କରି ଏହି ଗୋଲାମ ଦେଶରେ ଗୋଲାମ ସଂଖ୍ୟା ବୃଦ୍ଧି କରିବେ ନାହିଁ।" ଏଣେ ସ୍ୱୟଂ ମହାତ୍ମା ବାରମ୍ବାର କହିଛନ୍ତି କି ପ୍ରତ୍ୟେକ କାର୍ଯ୍ୟରେ ପ୍ରତ୍ୟେକ ଆପଣା ଆପଣା ବିଚାର ବୁଦ୍ଧି ପ୍ରୟୋଗ କରିବେ। ସୁତରାଂ ସତ୍ୟାଗ୍ରହୀମାନେ ନିଜ ବୁଦ୍ଧିରେ ବ୍ରହ୍ମଚର୍ଯ୍ୟକୁ ବାଖ୍ୟା କଲେ, କିଏ କହିଲା ପ୍ରଜନନ ବନ୍ଦ ହେଲେ ଲୋକସଂଖ୍ୟା ହ୍ରାସ ପାଇବ, ଫଳରେ ଏମିତି ବି ଦିନ ଆସିବ, ଏ ଜାତିଟା ଲୋକଶୂନ୍ୟ ହୋଇଯିବ। ଗାନ୍ଧିଙ୍କ କଥା ମାନି ବ୍ରହ୍ମଚର୍ଯ୍ୟ ରକ୍ଷା କରାଯାଇପାରେ, ଯେଉଁଠି ସ୍ୱରାଜ ଆସିଲା, ସେଠି ଆଉ ବନ୍ଦ କ'ଣ ପାଇଁ? – ଏମିତି ନାନା ପ୍ରକାର ଚର୍ଚ୍ଚା, ତର୍କ, ବିତର୍କ ଚାଲିଲା। ବ୍ରହ୍ମଚର୍ଯ୍ୟ ରକ୍ଷା କଥା କଥାରେ ରହିଲା, ଏହାକୁ ଢାଲକରି ଦଳେ ବେଶ୍ ଉପଭୋଗରେ ମଜ୍ଜିରହିଲେ। ପ୍ରବୃତ୍ତିରୁ ତ ନିବୃତ୍ତି ନାହିଁ। ଆଦିମ ପ୍ରବୃତ୍ତିରୁ ନିବୃତ୍ତି ଏତେ ସହଜ ନୁହେଁ; ଏଥି ପାଇଁ ଲୋଡ଼ା ସଂଯମ, ଇନ୍ଦ୍ରିୟ ନିୟନ୍ତ୍ରଣ। ଖାଲି କହିଦେଲେ କିଏ ବ୍ରହ୍ମଚାରୀ ହୋଇଯାଏ ନା ଅସହଯୋଗୀଏ ହୋଇପାରିଲେ! ତେବେ କ୍ରମରେ ବ୍ୟତିକ୍ରମ ଆଣିଲେ ମଧ୍ୟ ସତ୍ୟାଗ୍ରହୀଙ୍କୁ ଲଗାମ ନାହିଁ ଯେଣୁ, ସେମାନେ ଗାନ୍ଧିଙ୍କ ଚେଲା!

ସମସ୍ତ ପ୍ରକାର କଳ୍ପନା ଜଳ୍ପନା ମଧ୍ୟରେ ସ୍ୱରାଜ କଥା ଉଠିଲେ ଅସହଯୋଗୀମାନେ ଶତସିଂହର ବିକ୍ରମରେ ଅଣ୍ଟାଭିଡ଼ନ୍ତି। ସ୍ୱରାଜ ବାଲା ଅନେକ ତାରିଖ ଦିଅନ୍ତି; ଏ ମାସ, ସେ ମାସ, ଆର ମାସ – ଚାହିଁ ଚାହିଁ ଆଖିରୁ ପାଣି ମଳା। ଶେଷରେ ନିର୍ଧାର୍ଯ୍ୟ ଦିନଟିକୁ ଅପେକ୍ଷା ରହିଲା। ପିଲା ଅସହଯୋଗୀଏ ଫୁସୁରୁ ଫାସୁରୁ ହେଉଥାନ୍ତି କି, "ସ୍ୱରାଜର ଜଣେ ଜଣେ ଚେଲା ଆସିଲା ବେଳକୁ ତ ଏତେ ଢୋଲ ଚମକ ବାଜେ, ଏଥର ସ୍ୱୟଂ ଗୁରୁ ମହାରାଜ 'ସ୍ୱରାଜ' ଯେତେବେଳେ ଆସୁଛନ୍ତି, କେଜାଣି କେତେ କ'ଣ ହେବ।" ନିଜେ ସ୍ୱରାଜ ଯେତେବେଳେ ଆସିବେ ଗୁପ୍ତରେ ଆସିବେ, ସହସ୍ର

ରୂପଧରି ସବୁ ଆଶ୍ରମରେ ବିଜେ କରିବେ । କିଏ କହେ ରେଳରେ ତ କିଏ କହେ ବ୍ୟୋମଯାନରେ ଆସିବେ । କିନ୍ତୁ ଛାତ୍ର ସତ୍ୟାଗ୍ରହୀଟି ଠିକ୍ ଜାଣିଛି; ସ୍ୱରାଜ ଆସିଯିବ, ଅର୍ଥାତ୍ ସକାଳୁ ଉଠିଲା ବେଳକୁ ବ୍ରିଟିଶ ସରକାର ସଦଳବଳେ ଗଣ୍ଠିରି ବାନ୍ଧି ଖସିଯିବେ, ଆଉ ସେମାନେ ଆସନ ମାଡ଼ିବସିବେ । ଖାଲି ସ୍ୱରାଜ ଚିନ୍ତା ଦିନରାତି, ଆଖିରେ ନିଦ ନାହିଁ, ଶୋଇ ଶୋଇ ସପନ ଦେଖା, ଅବା ଦିବା ସ୍ୱପ୍ନ । ନିଜ ସ୍ୱପ୍ନର କଥା ମଧ ଛାତ୍ର ସତ୍ୟାଗହୀଟି କହେ, "କେତେ ବେଳେ ଦେଖେଁ, ମୁଁ ସିଂହାସନରେ ବସି ରାଜା ହୋଇଛି; କେତେବେଳେ ଦେଖେ ଯେଉଁମାନଙ୍କ ଉପରେ ରାଗଥିଲା, ତାଙ୍କୁ ଧରି ଗୋଟି ଗୋଟି କରି ଫାଶି ଦେଉଛି । ଆଉ ଥରେ ଥରେ ଦେଖେଁ କି ଭଲେଣ୍ଟିଅର ସୈନ୍ୟମାନଙ୍କୁ ଘେନି ଯୁଦ୍ଧକ୍ଷେତ୍ରରେ ଇଂରେଜ ସାଙ୍ଗରେ ଭୟାନକ ଲଢ଼େଇ ଲାଗିଛି, ରକ୍ତର ନଦୀ ବହିଯାଉଛି, ହାଣ ଖାଉଁଛୁ ଆମ ପକ୍ଷ । କାରଣ ଆମେ ମାଡ଼ ଖାଇବୁଁ, ମାଡ଼ ମାରିବୁ ନାହିଁ - କେତେ ମାରିବ ମାର, କେତେ ହାଣିବ ହାଣ, ଯେତେ ଅତ୍ୟାଚର କରିବ ତୁମେ, ତେତେ ସତ୍ୟ କରିବୁଁ ଆମେ, କିନ୍ତୁ ଘୁଞ୍ଚିବୁ ନାହିଁ ପହଣ୍ଡେ, ଏଇଥିରେ ଦେଖାଇବୁ ଆମର ବୀରତ୍ୱ, ସହିଷ୍ଣୁତା - ସହି ସହି, ଖାଇ ଖାଇ ଆମେ ହୋଇଯିବୁ ବଡ଼, ଆଉ ମାରି ମାରି, ପିଟି ପିଟି ତୁମେ ହୋଇଯିବ ଦୁର୍ବଳ । ତୁମେ ଯିବ ହଟି, ଆମେ ଯିବୁ ଜିତି ।" ଏମିତି ସ୍ୱପ୍ନ ଦେଖୁଁ ଦେଖୁଁ ସତରେ କମାଣ ଫୁଟିଲା । ଭୟରେ ଅଥୟ ହେଲା ଅସହଯୋଗୀଟି । ଏ ପ୍ରସଙ୍ଗରେ କାନ୍ତକବି ଅହିଂସା ସଂଗ୍ରାମର ଆର ଦିଗଟିକୁ ଦେଖାଇ ଦେଲେ । ସ୍ୱାଧୀନତା ପାଇଁ ଯୁଦ୍ଧ ଦରକାର, ସେ ଯୁଦ୍ଧ ଚଳାଇଲେ ସୁଭାଷ ବୋଷ, ଆଜାଦ୍ ହିନ୍ଦ୍ ଫଉଜ ଧରି, ତାହା ଇଂରେଜ ଶାସକଙ୍କ ହୃତ୍‌କମ୍ପ ସୃଷ୍ଟି କରିଥିଲା । କିନ୍ତୁ ଗାନ୍ଧୀଙ୍କ ମାର୍ଗ ବ୍ରିଟିଶ ରାଜତନ୍ତ୍ରକୁ ଅସୁବିଧାରେ ସିନା ପକାଇଲା; କିନ୍ତୁ ରାତାରାତି ଯେ ସେମାନେ ଭାରତ ଛାଡ଼ିଯିବେ - ଏକଥା ସମ୍ଭବ ହେଲାନି । ସେମାନେ ଯେବେ ଗଲେ, ଭାରତୀୟମାନଙ୍କୁ ଦେଶବିଭାଜନର ଦାରୁଣ ଯନ୍ତ୍ରଣା ସବୁଦିନ ପାଇଁ ଦେଇଗଲେ । ଏଣୁ କାନ୍ତକବି କଳ୍ପନାରେ ବିଶ୍ୱାସୀ ନଥିଲେ; ଏହା ଯେପରି ଉପରକୁ ଉଠିପାରେ, ସେହିପରି ତଳକୁ ଖସିପାରେ । ଇଂରେଜମାନେ କଳ୍ପନାକୁ ଉଡ଼ପବନ ଘୋଡ଼ା ସହିତ ତୁଳନା କରିଛନ୍ତି । ଠିକ୍ ସେହିପରି ସ୍ୱରାଜ କଳ୍ପନା ରହିଲା କଳ୍ପନାରେ । ସେକ୍ରେଟାରୀ ଆସି ଆଶ୍ରମରେ ଖବର ଦେଲେ, ଶୁଣାଇଲେ ତାରିଖଟାରେ ପୁଣି ସାନି ମହଲତ ପଡ଼ିଛି । ଏ ହତାଶ୍ୱାସ ନୈରାଶ୍ୟ ଭିତରେ ବି ଗୋଟାଏ

ପ୍ରକାର ସ୍ୱସ୍ତି ଥିଲା । ଯେତିକି ପାଣିକି ପଶିଲା ବେଳକୁ ସେତିକି ପଦ୍ମ ଘୁଞ୍ଚ ଘୁଞ୍ଚ ଗଲା । ଅସହଯୋଗୀଙ୍କ ଆସ୍ଥା ,ବିଶ୍ୱାସ କ୍ରମେ ତୁଟିବାରେ ଲାଗିଲା । ହରତାଳ କାମ ପୁରୁଣା ହୋଇ ମାନ୍ଦା ପଡ଼ିଗଲା । ଏଣିକି ଗୋଟେ କିଛି ନୂଆ କରିବାକୁ ପଡ଼ିବ, ନ ହେଲେ ଟେକ ରହିବ ନାହିଁ । ଗାନ୍ଧି ମହାତ୍ମା ଜେଲଭରୋ ଆନ୍ଦୋଳନ ଡାକରା ଦେଲେ । ଜେଲଖାନାଟା ପବିତ୍ର ସ୍ଥାନ । ଅସହଯୋଗୀମାନେ ଧରିନେଲେ - ଚୋରି, ଜୁଆଚୋରି, ଜାଲିମ୍‌ବାଜି, ଗୁଣ୍ଡାଗିରି ଯାହା ଇଚ୍ଛା ତାହାକର ପଛକେ, ସ୍ୱଦେଶ ନାମରେ ଜେଲ ଯାଅ । ଘରିଆଡ଼େ ଭାରି ଗଣ୍ଡଗୋଳ ଲାଗିଲା - ଜେଲ୍, ଜେଲ୍, ଜେଲ୍, ଯେ ଥରେ ଜେଲ ଯାଇପାରିଲା ସେ ଏକା ଦିନକେ ହୋଇପାରିଲା ଗୋଟାଏ ବଡ଼ମଣିଷ । ନେତାମାନେ ବହୁ ଚେଷ୍ଟା ଯତ୍ନକରି ଜେଲ୍ ଯିବାର ଆୟୋଜନ କଲେ । ଗଲାକ୍ଷଣି ନାଁ ବାଜିଗଲା । ପିଲା ସତ୍ୟାଗ୍ରହୀଟି ଭାଗ୍ୟରେ ଏହା ଘଟିଲାନି । କେତେ ଚୂନା ଚୋପରା, ଯାହାଙ୍କର କେବେ ନାଁ ଗନ୍ଧ ନଥିଲା, ସେ ଆଜି ଗୋଟେ ଗୋଟେ ସହିଦ୍ । ସତ ସତ୍ୟାଗ୍ରହୀଟି ରହିଲା ପରଦା ପଛରେ । ତା' ମଧ୍ୟରେ ନୈରାଶ୍ୟ, ହତାଶା, ମାନସିକ ଯନ୍ତ୍ରଣା କ୍ରମେ ବଢ଼ିବାକୁ ଲାଗିଲା । ସେ ଶପଥ ନେଲା; ଯାହା ହେବାର ହେଉ, ଜେଲ ଯିବାକୁ ପଡ଼ିବ ! ଗାନ୍ଧିଙ୍କ ଜେଲ୍ ମନ୍ତ୍ର ଅନେକଙ୍କ ନାବାଳକି ଫିଟାଇ ଦେଲା । ଯାହାର ଜେଲ୍ ଖାତାରେ ନାଁ ନାହିଁ ସେ ମୁକ୍ତି ସଂଗ୍ରାମୀ ଗଣତିରେ ଗଲାନି; ଏମିତି ଶତଶତ ଅସହଯୋଗୀଏ କେଉଁ ଦୂରିଆ ଦୂରିଆ ଗାଁ ଗଣ୍ଡାରେ ବଣମଲ୍ଲୀ ପରି ବଣରେ ଝଡ଼ିଗଲେ । କିଏ ବା ତାଙ୍କ ଗନ୍ଧ ବାରିଲା ନା ଏବେ ବାରୁଛି !

(୫)

ଅସହଯୋଗ ଆନ୍ଦୋଳନ (୧୯୨୦-୨୧) ବେଳକୁ ସାରା ଦେଶରେ ଇଂରେଜ ବିରୋଧୀ ପବନ ବେଗଗାମୀ ହେଉଥିଲା । ମାତ୍ର ମୁକ୍ତିଯୁଦ୍ଧ ଏକ ବଳିଷ୍ଠ ରୂପରେଖ ନେଇନଥିଲା । ଏହା ସତ୍ତ୍ୱେ; ଧୂର୍ତ୍ତ ଇଂରେଜ ଶାସକ ଆପଣାର ଭବିଷ୍ୟତକୁ ଆକଳନ କରିନେଇଥିଲେ । ସେମାନଙ୍କୁ ମଧ୍ୟ ଅଛପା ନଥିଲା ଯେ ଭାରତୀୟ ଜାତୀୟ କଂଗ୍ରେସ (୧୮୮୫) ଦିନେ ତାଙ୍କୁ ଦେଶରୁ ବିତାଡ଼ିତ କରିବ । ତଥାପି, ଏହି ସର୍ବଭାରତୀୟ ସଂଗଠନକୁ ସେମାନେ ନିଷିଦ୍ଧ କରିନଥିଲେ । ତାଙ୍କ ସ୍ୱେଚ୍ଛାଚାରୀ ଶାସନ ବିରୁଦ୍ଧରେ

ଭାରତ-ଜନମତ କ'ଣ ଥିଲା, ତାହା ଜାଣିବା ପାଇଁ କଂଗ୍ରେସକୁ ପରୋକ୍ଷରେ ଆଶୀର୍ବାଦ କରିଥିଲେ । ସ୍ୱାଧୀନତା ଲଢ଼େଇରେ ସୃଷ୍ଟ ସ୍ୱତସ୍ଫୂର୍ତ୍ତ ସଂଗ୍ରାମୀ ମନୋଭାବଟି କୌଣସି ଦମନଲୀଳାକୁ ଭ୍ରୁକ୍ଷେପ କରିନଥାଏ; ଜନତାଙ୍କର ଆତ୍ମବଳ ଯେକୌଣସି ବିଦେଶୀ ଶାସକଙ୍କୁ ବିତାଡ଼ିତ କରେ - ଏଇ କଥାକୁ ଗୋରା ଶାସକ ବେଶ୍ ହୃଦୟଙ୍ଗମ କରି ନେଇଥିଲେ । ଏଣୁ ସ୍ୱାଧୀନତା ସଂଗ୍ରାମକୁ ଚପେଇ ଦେବା ପାଇଁ ସେମାନେ ଏକ ଅମୋଘ ଅସ୍ତ୍ର ତିଆରି କଲେ । ପ୍ରଣୀତ ହେଲା ରାଓଲତ୍ ଆଇନ୍ (୧୯୧୯) । ଏହା ଯେତିକି ତ୍ରୁଟିପୂର୍ଣ୍ଣ, ତା' ଠାରୁ ଥିଲା ବହୁ ଗୁଣରେ ଅଧିକ ଦୁର୍ଭାଗ୍ୟଜନକ । ପୋଲିସ ଫଉଜ ଅମାପ କ୍ଷମତାର ଅଧିକାରୀ ହେଲେ; ବିନା ୱାରେଣ୍ଟ, ପରୱାନାରେ ମନଇଚ୍ଛା ଗିରଫ କରିବାର ସୁଯୋଗ ପାଇଲେ; ଦେଶଦ୍ରୋହ ଅପରାଧ ମଧ୍ୟ ଲଗାଇଲେ ସ୍ୱତନ୍ତ୍ରତା ସେନାନୀଙ୍କ ବିରୁଦ୍ଧରେ । ବହି ଯାଉଥିବା ନଈ, ଦୃଢ଼ ପ୍ରତିଜ୍ଞ ମନକୁ କିଏ ବା ଅଟକାଇ ପାରିବ ! ସରକାରଙ୍କ ସମସ୍ତ ପ୍ରକାର ନିର୍ଯ୍ୟାତନା ସତ୍ତ୍ୱେ; ଗାନ୍ଧିଜୀଙ୍କ 'ଜେଲ୍‌ଭରୋ' ଡାକରା ଫଳପ୍ରଦ ହେଲା । ଏହାର ଦୁଇଟି ପ୍ରଭାବ ପଡ଼ିଲା ଜନଜୀବନରେ । ସମର୍ପିତ ସତ୍ୟାଗ୍ରହୀମାନେ ଦେଶପାଇଁ ଜୀବନକୁ ବାଜି ଲଗେଇ ଦେଲେ । ପୁଲିସର ଗୋଇଠା, ଲାଠି, ଗୁଳିଗୋଳାକୁ ଅକାତରେ ସହ୍ୟ କଲେ, ଜୋରଦାର ହେଲା ଅହିଂସା ସଂଗ୍ରାମ । ଆଉ ଦଳେ ସୁବିଧାବାଦୀ ମଧ୍ୟ ସୃଷ୍ଟି ହେଲେ । ଜେଲ୍ ଗଲେ ଭବିଷ୍ୟତକୁ ଗୋଟେ ଅଧେ ବଡ଼ ପଦବୀ ମିଳିଯିବ - ଏ ପ୍ରକାର କ୍ଷମତା ଲିପ୍‌ସାକୁ ଚରିତାର୍ଥ କରିବାକୁ ସେମାନେ ଯୋଗାଡ଼ କରି ଜେଲ ଗଲେ । ଏ ପରିପ୍ରେକ୍ଷୀରେ ଛୋଟଛୋଟ ବାନର ସେନାଙ୍କର ମଧ୍ୟ ଜେଲ୍ ଯିବା ଝୁଙ୍କ ବଢ଼ିଲା । କେହି ନ ଯାଇ ପାରିଲେ ମନସ୍ତାପ, ହତାଶା ମଧ୍ୟରେ ସମୟ କାଟିଲା ।

ଛଳରେ, କୌଶଳରେ ଜେଲ ଯାଇଥିବା କେତେକ ସତ୍ୟାଗ୍ରହୀଙ୍କୁ ଦେଖି ସେଦିନ ଛାତ୍ର-ସତ୍ୟାଗ୍ରହୀଟି ଭାଙ୍ଗି ପଡ଼ିଲା । ହତାଶାରେ ଆତ୍ମହତ୍ୟା କରିବା ଭଳି ଚିନ୍ତାରୁ ସେ ନିବୃତ୍ତ ହୋଇପାରିଲାନି । ଦିନେ ବଡ଼ି ସକାଳୁ ଆଶ୍ରମ ଛାଡ଼ି ଚାଲିଲା; କିଛି କୁହାପୋଛା ନାହିଁ । କ'ଣ ଖାଇଲା, ପିଇଲା, କିଛି ସେ ଜାଣିନି । ସକାଳୁ ସକାଳୁ ତା'ର ହୋସ୍ ଆସିଲା । ଏବେ ସେ ପୁଲିସ ହାଜତରେ । ଚୋରି, ନାରୀ, ନିଶାପାନ ଭଳି ନାନାଦି ଦଫା ଲଗାଇ ପୁଲିସ ତାକୁ କୋର୍ଟଚାଲାଣ କଲା । ନିର୍ଦ୍ଦୋଷ ଥାଇ ମଧ୍ୟ ସେ ହାକିମଙ୍କୁ କିଛି

କହିଲାନି ନିଜ ସପକ୍ଷରେ । ଜବାବ ଦେବା, ସଫେଇ ଦେବା ବା ଲଢ଼ିବା ସତ୍ୟାଗ୍ରହୀଙ୍କ ପାଇଁ ନିଷିଦ୍ଧ । ପିଲାଟି ତାହା ଅକ୍ଷରେ ଅକ୍ଷରେ ପାଳନ କଲା । ତାକୁ ସଜା ମିଳିଲା ଛ' ମାସ । ଖବରଟା ଚାରିଆଡ଼େ ପହଞ୍ଚିଗଲା । ଅନ୍ୟ ସତ୍ୟାଗ୍ରହୀ ଜେଲ ଯିବା ସମୟରେ ଜନତାର ଉଲ୍ଲାସ, ଭାବବିହ୍ୱଳ ବିଦାୟ ସମ୍ବର୍ଦ୍ଧନା ପରି ତାକୁ ମଧ ବଡ଼ ଉତ୍ସାହରେ ବିଦାୟ ଦେଲେ ଆଉ ସବୁ ସତ୍ୟାଗ୍ରହୀମାନେ । ସେଦିନର ରୋମାଞ୍ଚକର ଅନୁଭୂତିକୁ ବଖାଣିଛି ବାଳ-ସତ୍ୟାଗ୍ରହୀଟି, "ମୋର ଆରେଷ୍ଟ ହେବା କଥାଟା ସେତେବେଳକୁ ବାଜିଗଲାଣି, 'ଜୟ ଗାନ୍ଧୀ ମହାରାଜା କି ଜୟ' କହି ମୁଁ ଯେତେବେଳେ ପବିତ୍ର ସ୍ଥାନ ଛାଡ଼ିଲି, ମୋ ପଛରେ ଶହଶହ ଲୋକ ଜୟଧ୍ୱନି କଲେ ।" ଖବର କାଗଜରେ ନାଁ ବାହାରି ଗଲାଣି, "ଅମୁକ ଜଣେ ଦେଶଭକ୍ତଙ୍କୁ ପୁଲିସ କୌଣସି ଉପାୟରେ ପକାଇ ନପାରି ଶେଷରେ ଅତି ଜଘନ୍ୟ ଦୋଷାରୋପ କରି ଚାଲାଣ ଦେଇଥିଲେ; କିନ୍ତୁ ତାଙ୍କର ନୈତିକ ସାହସ ଏତେ ଟାଣୁଆ, ସେ ସେଥିରେ ସୁଦ୍ଧା ସ୍ୱଧର୍ମ ତ୍ୟାଗ କରି  ପକ୍ଷ ସମର୍ଥନ କଲେ ନାହିଁ, କିମ୍ବା ପୁଲିସର ପ୍ରଲୋଭନରେ ନଭୁଲି, ନିର୍ଭୟରେ, ଅକାତରରେ ସସ୍ମିତ ବଦନରେ ଦଣ୍ଡ ବରଣ କରିନେଲେ ।" ଏ ପ୍ରକାର ପ୍ରଚାର ସବୁ ଜେଲ୍ ଯିବା ବାଲାଙ୍କ ପାଇଁ ସମାନ; ଧୁଆ ମୂଳା ଅଧୁଆ ମୂଳା ସବୁ ସମାନ । ଫଳରେ ଛଦ୍ମୀ ସତ୍ୟାଗ୍ରହୀମାନେ ଏହା ଦ୍ୱାରା ଅଧିକ ଉତ୍ସାହିତ ହେଲେ । ଦେଶ ମାତୃକା ପାଇଁ ନୁହେଁ; ଆପଣା ସ୍ୱାର୍ଥ ପାଇଁ ରାସ୍ତା ଉଣ୍ଡିଲେ । ସେହିପରି ଜେଲ୍‌ଖାନାରୁ ମୁକୁଳିଲେ ସଭାଟିଏ ଚାଲେ, ବକ୍ତୃତା, ଫୁଲମାଳ, ହସନ, କ୍ରନ୍ଦନ, ଆଲିଙ୍ଗନ ଆଦି ଯାହା ହେବାର କଥା ହୁଏ । ଏ କଥାଟି ମଧ ଦେହସୁହା ହୋଇଗଲା । ଏତେ କଷ୍ଟ, ମାଡ଼, ଗାଳି ସହି ଲଢ଼େଇ କରି କିଛି ମିଳୁନି; ନୈରାଶ୍ୟର ଅନ୍ଧକାର ମଧରେ କେତେକ ଛାତ୍ର ଦିଗହଜା ହେଲେ ।

ଦିନ ପରେ ଦିନ ଗଲା; ଅସହଯୋଗର ମଝିମଝିଆ ସମୟ । ଛୋଟ ପାଠପଢୁଆ ପିଲାଏ; କେତେ କ'ଣ ଭବିଷ୍ୟତ, ବାପା, ମା' କ'ଣ ନାହିଁ କ'ଣ ସ୍ୱପ୍ନ ଦେଖୁଥିଲେ ସେମାନଙ୍କୁ ନେଇ; ପୁଅ ହାକିମ ହବ, ପୁଲିସ ହବ, କଲମ ଲେଖି ଟଙ୍କା କମେଇବ; କିନ୍ତୁ ଗାନ୍ଧି-ମନ୍ତ୍ର ବାଇଆ ପିଲେ ଘର ମୁହାଁ ହେବାକୁ ଅମଙ୍ଗ ହେଲେ । ଯାହା ହବାର ହଉ, ପଡ଼ି ରହିବାକୁ ହବ, ଏଇ ଆଶ୍ରମ ପରା ସେମାନଙ୍କର ଇହକାଳର ଦେବତା ପୀଠ, ପରକାଳର ସମାଧି କ୍ଷେତ୍ର ! କିନ୍ତୁ ସେମାନଙ୍କ ଦୁର୍ଦ୍ଦଶା ବଢ଼ିଲା  । ଯିଏ ଯେମିତି ଖସିଲେ;

ମାତ୍ର ଦେଶଭକ୍ତ ଛାତ୍ରଟିର ଘର ଲେଉଟାଣି ନୋହିଲା । ଅତି ବିକଳରେ ସେ କହେ ତା' ଅନ୍ତର କଥା ପଦିକ, "ଗୋଟା କେତେ ଜୀବନ ଝଗଡ଼ିଆ ଆଶ୍ରମରେ ପଡ଼ିରହିଛନ୍ତି । ଅରଟରେ ବୁଢ଼ୀଆଣି ବସା ବାନ୍ଧିଲାଣି । ନୁଖୁରା ପଞ୍ଚୁବର୍ଣ୍ଣ ଘଉଳ ମୁଠାଏ ମୁଠାଏ ମାଗି ପେଟ ବିକଳିଆ ପଡ଼ି ରହିଛନ୍ତି ।" ତା ବି ମିଳିବା ଅସମ୍ଭବ ଜଣା ପଡ଼ିଲା । ଏଣିକି ନୂଆ ବାଗରେ, ନୂଆ ସ୍ୱରରେ ସତ୍ୟାଗ୍ରହୀଙ୍କୁ ଏକଜୁଟ୍ କରାନଗଲେ ସବୁ ଶେଷ ହୋଇଯିବ ।

ଦିନକୁ ଦିନ ସଂଗ୍ରାମୀମାନଙ୍କର ଆଗ୍ରହ ତୁଟିବାକୁ ଲାଗିଲା । ସ୍ୱାଧୀନତାର କଳ୍ପିତ ସୁନାକ୍ଷେତ ବାଲୁଙ୍ଗାରେ ପୂରିଗଲା । ନା ଅଛନ୍ତି ରାମ, ରାମ ରାଜ୍ୟ ତ ଆକାଶ କଇଁଆ ଚିଲିକା ମାଛ ପରି ଲାଗିଲା । ଲୋକେ ମଧ୍ୟ ଅସହଯୋଗୀଙ୍କୁ ଆଉ ଠିକ୍ ଢଙ୍ଗରେ ଦେଖିଲେନି । ତାଙ୍କୁ ଦେଖିଲେ ନାକ ଟେକିଲେ । ପୁଣି ଖଦଡ଼ିଆଙ୍କୁ ଦେଖିଲେ କିଏ ଟାପରା କଲା, କିଏ ଟାହୁଲି ମାରିଲା, କିଏ ଦେଖି ଅପସରି ଗଲା । ପକେଟିଂ ତ ନାହିଁ, ଚାନ୍ଦା ଆଦାୟ ଚୁଲିକି ଗଲା, ଭିକ ମୁଠାଏ ମିଳିଲାନି । ସଭା କରିବାକୁ ନୋଟିସ୍ ଦେଲେ ଲୋକେ ଆସିଲେନି; ବଜାର ଘାଟରେ ବକ୍ତୃତା ଦେଲେ ପୁଲିସ ବାଲା ମାଡ଼ପିଟ୍ କଲେ । ସତ୍ୟାଗ୍ରହୀଙ୍କ ବଇଷିମ ହେବା ନୋହିଲା, ଧାନ ମୁଠି ମୁଠି ଖୁଦ ଗୋଟି ଗୋଟି ବାଛୁଁ ବାଛୁଁ ଦିନ ସରିଲା । ଏ ପରିସ୍ଥିତିରେ ବାଳକ ସତ୍ୟାଗ୍ରହୀଟି ନିଜକୁ ଧିକ୍‌କାର କଲା; ଗାନ୍ଧି ମହାତ୍ମା ଆଡ଼େ ତା ମନ ଚିଡ଼ିଗଲା । ମନେ ମନେ ସେ ଭାବିଲା, "ଗାନ୍ଧୀପୁଅଟା କି ମତଲବରେ ଆମ ଭଳିଆ ସରଳମତି ଭଲ ଲୋକ ପିଲାଙ୍କୁ ଏ ଫନ୍ଦାରେ ପକାଇଲେ, ତାହା କିଏ କହିବ ? ଆଗ ଗଛ ଉପରକୁ ଚଢ଼ାଇ ଦେଇ ନିଶୁଣୀଟାକୁ କାଢ଼ି ନେଲେ ସିନା ! ଆମ ଅବସ୍ଥା ଚୋର ଚାଣ୍ଡାଳଠାରୁ ବଳିଲା । ଗାନ୍ଧି ମହାରାଜା ସତ୍ୟାଗ୍ରହୀଙ୍କୁ ପୋଷିବା ପାଇଁ କୋଟିଏ ଟଙ୍କା ଉଠାଇଥିଲେ, ତାହା ତ କଡ଼ାକେ ଗଣ୍ଡାକେ ରୋକ୍ ଠୋକ୍ । ଖଦଡ଼ ବିଭାଗ ଭଳି ସ୍ଥାନେ ସ୍ଥାନେ ଖଣ୍ଡିଏ ଖଣ୍ଡିଏ ଯେଉଁ ଦୋକାନ ଥିଲା, ସେଥିରେ ସୂତା, କନା ସହିତେ ନଦାରଦ ।" କିଏ ଜାଣିଥିଲା ସ୍ୱରାଜ ନ ହେଉଣୁ ଏ ଅବସ୍ଥା । ଏଣିକି ପେଟ ଚଖଣ୍ଡକ ପୋଷିବା କାଠିକର ପାଠ । ଏବେ ଚଉଦିଗ ଅନ୍ଧାର । ପୁନଶ୍ଚ ନୂଆ ଚିନ୍ତା, ନୂଆ ରାସ୍ତା – ନତୁବା ଆଉ ଘରା କ'ଣ ଥିଲା ? ଏବେ ଗୀତ ଗାଇ ଭିକ ମାଗିବାକୁ ହିଁ ପଡ଼ିବ ।

ମୁକ୍ତିଯୁଦ୍ଧକୁ ଜାତୀୟତାବାଦୀ କବିତା ବହୁଭାବରେ ତେଜୋଦୀପ୍ତ କଲା; ଦେଶପ୍ରେମ ଜାଗରିତ କଲା ଜନତା- ପ୍ରାଣରେ । ଏଥିରେ ପ୍ରଚୋଦିତ ହୋଇ ଅନେକ ମଧ୍ୟ ସ୍ୱତନ୍ତ୍ରତା ଲଢ଼େଇରେ ଯୋଗଦେଲେ । କବି ଲକ୍ଷ୍ମୀକାନ୍ତ, ବାଞ୍ଛାନିଧି, ବୀରକିଶୋର, ନିତ୍ୟାନନ୍ଦଙ୍କ ଭଳି ବହୁ ଜାତୀୟତାବାଦୀ ଲେଖକ ଆପଣା ଆପଣା ଉଦ୍‌ବୋଧନୀ ଗୀତିକା ମାଧ୍ୟମରେ ସ୍ୱଦେଶପ୍ରୀତିର ମନ୍ଦାକିନୀ ଧାରା ପ୍ରବାହିତ କଲେ; ଆର୍ଦ୍ର ହେଲେ ଦେଶବାସୀ । ସେମାନଙ୍କର ସଙ୍ଗୀତକୁ ସୁଲଳିତ କଣ୍ଠରେ ଗାଇଲେ ବାନରସେନାମାନେ । ଅଧିକ ଉତ୍ସାହ, ଉଦ୍ଦୀପନାରେ ଚାଲିଲା ଅସହଯୋଗ, ହରତାଳ, ପିକେଟିଂ ।  ଅଭାବ ଅନଟନରେ ଥିବା ବାଳ ସତ୍ୟାଗ୍ରହୀମାନେ ଗୀତ ଗାଇ ସ୍ୱରାଜ ଭିକ୍ଷା ମାଗିବା ଆରମ୍ଭ କରିଦେଲେ । ସେମାନଙ୍କ ମଧ୍ୟରେ ଭଲ ଗୀତ ଗାଉଥିବା ପିଲାଗୁଡ଼ାଏ ମଧ୍ୟ ଥିଲେ । ଏଣେ ଲଳିତ, ମଧୁର ସ୍ୱର, ନଦେଲାବାଲା ବି ଦେବାକୁ ମନ ବଳେଇଲେ । ସେମାନଙ୍କୁ ଆଜେବାଜେ ଗୀତ ଗାଇବାକୁ ମନା; ଯାହା କିଛି ଶିକ୍ଷା, ପରିବେଷଣ ଖାଲି ଜାତୀୟ ସଙ୍ଗୀତ । କେଉଁ ଗୀତରେ ଗାନ୍ଧି ମହାରାଜଙ୍କ ଗୁଣଗାନ ତ କେଉଁ ଗୀତରେ ଜାତି ପ୍ରେମର ବଜ୍ରଗମ୍ଭୀର ଆହ୍ୱାନ । ସେମିତିକା ଗୀତ ଗୁଡ଼ିକରୁ ଲକ୍ଷ୍ମୀକାନ୍ତ ମଧ୍ୟ ପଦେ ଦିପଦ ଲେଖିବାକୁ ଭୁଲି ନାହାନ୍ତି । ଯେମିତି, "ଆସିଛିରେ ଗାନ୍ଧି ଅବତାର, ପତିତ ତାରଣ; ଜଗତ କାରଣ, ଅରଟ ଧାରଣ, ଦାରିଦ୍ର୍ୟ ବାରଣ, ଦୟାର ଆଧାର ।"ପୁନଶ୍ଚ "ଉଠଉଠ ଜାଗ ଜାଗ ମଠ ମଠ ଲାଗ ଲାଗ; ଆଗ ଆଗ ବାନ୍ଧ ପାଗ, ଦେଇ ଦାଗ, ମାଗ ମାଗ, ନ ଭାଗ ଆଉ ଏଣିକି"  - ଏମିତି କେତେ ପ୍ରକାର  ଗୀତ । ବହୁ ଗୀତ ଥିଲା ସରସ ସୁନ୍ଦର, ସାର୍ଥକ ଭାବର ଉଦ୍ରେକ ।ଏଥିରେ ପିଲାଏ ବେଳେବେଳେ ବାଜେ ଗୀତ ମିଶାଇ ଗାଇଲେ । ଏ ପନ୍ଥା ବି କାମ କଲାନି । ସହରିଆ ମାନେ ନିତି ପ୍ରତି ଏ ପ୍ରକାର ତାମସା ଦେଖି ଦେଖି ଦିକ୍‌ଦାର ହୋଇଗଲେ । ଚାନ୍ଦାଫାନ୍ଦା ତ ଦେଲେନି, ଓଲଟି ସତ୍ୟାଗ୍ରହୀମାନଙ୍କୁ ହତୋତ୍ସାହ ବାଣୀ ଶୁଣାଇଲେ । ଏଣିକି ଆଉ ସହର ନୁହେଁ; ହରତାଳକାରୀ ମଫସଲ ଆଡ଼େ ଯିବାକୁ ମନସ୍ଥ କଲେ ।

ପ୍ରାକ୍ ସ୍ୱାଧୀନତା କାଳ, ଦୂରିଆ ମଫସଲରେ ଶିକ୍ଷା ଦୀକ୍ଷା ସେମିତି ନଥିଲା । ଅସହଯୋଗୀମାନେ ଗାନ୍ଧିଜୀଙ୍କୁ ଦେବତା କରାଇ ଦେଇଥିଲେ ସେମାନଙ୍କ ନଜରରେ । ଗାନ୍ଧିପନ୍ଥୀ ମାନେ ଝାଞ୍ଜ, ମୃଦଙ୍ଗ ଧରି ସଂକୀର୍ତ୍ତନ କଲେ ଗାଁ ଗାଁରେ । ସାଧାରଣ ଲୋକଙ୍କ ମଧ୍ୟରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପହଞ୍ଚିଲା । ତାହା ସହ ସ୍ୱରାଜ ଭିକ୍ଷା ଭଲ ମିଳିଲା ।

ଦିନ କେତେଟା ଏମିତି କଟିଲା । ବର୍ଷେ ଗଲା; ସ୍ୱରାଜ ମିଳିଲାନି । ବହୁ ଅସହଯୋଗୀ ବୀତସ୍ପୃହ ହୋଇଗଲେ । କ୍ରମେ ଆଶ୍ରମର ଅନ୍ତେବାସୀଙ୍କ ସଂଖ୍ୟା ହ୍ରାସ ପାଇଲା । କିଏ ଗୁମାସ୍ତା ଚାକିରୀ ଖଣ୍ଡେ ପାଇ ରହିଗଲା, କିଏ ଦୋକାନ କରିବାକୁ ବାହାରିଲା । କିଏ ପାଠ ପଢ଼ାଇଲା, କିଏ ବା ଚାକିରୀ ଖଣ୍ଡେ ପାଇ ରହିଗଲା । ଆଉ କିଏ କିଛି ନ ପାଇ ଓଡ଼ିଆଙ୍କର ଶେଷ ଭରସା ; କଲିକତା ସଫରରେ ଚାଲିଗଲା । ସୁବିଧା ଉଣ୍ଡି ଯିଏ ଯାହାର ବାଟ ବାଛି ନେଲା ।" ଏ ଥିଲା ସୁବିଧାବାଦୀଙ୍କ ମାନସିକତା; କିନ୍ତୁ ସମର୍ପିତ ସତ୍ୟାଗ୍ରହୀମାନେ ଢୋକେ ଖାଇ ଦଣ୍ଡେ କାଇଁ ପଡ଼ିରହିଲେ ।

ମୁକ୍ତି ଯୁଦ୍ଧରେ ରାତାରାତି ସ୍ୱାଧୀନତା ମିଳିଯାଏନି; କ୍ଷମତା ଆଶା ରଖିଲେ ଏହାର ପବିତ୍ରତା ନଷ୍ଟ ହୁଏ, ଲକ୍ଷ୍ୟ ହାସଲରେ ବିଳମ୍ୱ ଘଟେ । ଏଇ କଥାଟି ପରିଲକ୍ଷିତ ହେଲା ଅସହଯୋଗ କାଳରେ । ଅନେକ ଗାନ୍ଧିଙ୍କ ସଦାଚାରୀ ନୀତି ଆଦର୍ଶକୁ ଗ୍ରହଣ କରିନେଲେ, ତାଙ୍କ କଥାକୁ କାମରେ ଲଗାଇଲେ । ଆଉ ଗୋଟେ ଗୋଷ୍ଠୀ ତାଙ୍କ ନାଁ ବିକିଲେ, ବିକୁଥିଲେ ସ୍ୱାଧୀନତା ପୂର୍ବରୁ, ବିକି ଚାଲିଲେ ସ୍ୱାଧୀନତା ପରେ । ତଥାପି ଗାନ୍ଧିଜୀ ଥରେ ଯେଉଁ ଦୀପଟା ଜାଳିଦେଲେ; ତାହା ଏକା ବେଳକେ ଲିଭିନାହିଁ, କେବଳ ତେଲ ଅଭାବରୁ ଟିକେ ନିସ୍ତେଜ ହୋଇ ଯାଇଛି ମାତ୍ର । ଏଣୁ କାନ୍ତକବି ଗଭୀର ଦୁଃଖରେ ଲେଖିଛନ୍ତି, "ଏ ଅଭିଶପ୍ତ ଦେଶରେ ଏପରି ପ୍ରାଣବାନ୍ ବ୍ୟକ୍ତି ଆଜି ସୁଦ୍ଧା ଅଛନ୍ତି ଯେଉଁମାନେ ଆମ ପରି ଦେଶ ବୈରାଗୀଙ୍କ ପାଇଁ ଅନୁଭବ କରୁଛନ୍ତି । ତେବେ ଧନ୍ୟ ଏ ଦେଶ, ଧନ୍ୟ ଗାନ୍ଧୀ, ଧନ୍ୟ ଭାରତ ଜନନୀ, ଆଉ ମହାଧନ୍ୟ ସର୍ବତ୍ୟାଗୀ - ଆମେ !" ଆମକୁ କ୍ଷମତା, ସ୍ୱାର୍ଥ, ପଦପଦବୀ ମୋହକୁ ତ୍ୟାଗ କରିବାକୁ ପଡ଼ିବ, ଭାରତ ମାତାଙ୍କର ଚରଣ ବନ୍ଦନା କରିବାକୁ ହେବ, ତା ନହେଲେ ଏ ଜାତି, ଏ ଦେଶର ଭବିଷ୍ୟତ ଯେ ପୁନଃ ଅନ୍ଧକାରମୟ ହୋଇନଯିବ; ସେକଥା କିଏ କହିବ ?

(୬)

ଅସହଯୋଗ ଆନ୍ଦୋଳନ ଚାଲିଲା ପାଖାପାଖି ଏକ ବର୍ଷରୁ ଊର୍ଦ୍ଧ୍ୱ । ଅସହଯୋଗୀଙ୍କ ଆନନ୍ଦ, ନିରାନନ୍ଦ, ଆଶା, ଆକାଂକ୍ଷା, ହର୍ଷ, ବିଷାଦ-ଏପ୍ରକାର ମିଶା ମିଶି ମାନସିକ ସ୍ଥିତି । ସ୍ୱରାଜକୁ ଚାହିଁ ଚାହିଁ ଆଖିରୁ ପାଣି ମଲାଣି । ହଠାତ୍ ଖବର ଆସିଲା

ଗାନ୍ଧି ମହାତ୍ମାଙ୍କୁ ପୁଲିସ୍ ବାନ୍ଧିନେଲେ, ପୂରା ଛ' ବର୍ଷ ଜେଲ୍ । ଏଣିକି ଭାଳେଣି, କାହା ନାଁ ବିକି ସେମାନେ ଖାଇବେ, କାହା ନାଁ' ଧରି ପାରିହେବେ ? ଯାହାହେଲେବି ଗାନ୍ଧିଜୀଥିଲେ ସେମାନଙ୍କର ସାହାଭରସା । ଏବେ ଆନ୍ଦୋଳନର ମେରୁଦଣ୍ଡ ଭାଙ୍ଗିଗଲା ।

୧୯୨୨ ମସିହା, ଫେବୃୟାରୀ ୫ ତାରିଖ । ଅସହଯୋଗୀଙ୍କ ନିରସ୍ତ୍ର ଶୋଭାଯାତ୍ରା ଉପରେ ପୋଲିସର ଅମାନୁଷିକ ଆକ୍ରମଣ ଯୋଗୁଁ ହିଂସାତ୍ମକ କାଣ୍ଡ ଘଟିଲା ଉତ୍ତର ପ୍ରଦେଶର ଚୌରୀଚୌରାଠାରେ । ଉତ୍ୟକ୍ତ ସତ୍ୟାଗ୍ରହୀମାନେ ଏଠାକାର ଥାନାରେ ନିଆଁଲଗାଇଦେଲେ । ଏପ୍ରକାର ହିଂସାତ୍ମକ ଘଟଣା ସଦାଚାରୀ, ନୀତିନିଷ୍ଠ ଗାନ୍ଧିଜୀଙ୍କୁ ମର୍ମାହତ କଲା । ସେ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାର କରିବାକୁ ନିଷ୍ପତ୍ତି ନେଲେ । ତାହା ବହୁ ଉଚ୍ଚସ୍ତରୀୟ ରାଜନେତାଙ୍କୁ ହତଚକିତ କରିଦେଲା । ପ୍ରତିଟି କ୍ରିୟାର ଗୋଟେ ସମାନ କିମ୍ବା ତତୋଧିକ ପ୍ରତିକ୍ରିୟା ରହିବା ସ୍ୱାଭାବିକ । ପ୍ରତିଟି ମଣିଷର ସହିବାର ଗୋଟେ ସୀମାଥାଏ । ମୁକ୍ତି ସଂଗ୍ରାମ କାଳରେ ଗୋରା ସରକାରଙ୍କର ଦମନଲୀଳା ଥିଲା ସୀମାତୀତ । ବିଶେଷକରି ମଳିମୁଣ୍ଡିଆ, ଅପାଠୁଆ, ନିଦରବ ସତ୍ୟାଗ୍ରହୀଏ ଅଧିକ ମାତ୍ରାରେ ପୁଲିସ ଜୁଲମର ଶିକାର ହୋଇଥିଲେ । ସେମାନଙ୍କର ଅକଥନୀୟ ଅତ୍ୟାଚାରକୁ କେତେଦିନ ବା ଗ୍ରହଣ କରି ହୋଇଥାନ୍ତା ! ଚୌରୀଚୌରା ଥାନା ପୋଡି ସତ୍ୟାଗ୍ରହୀଙ୍କ ପୁଞ୍ଜିଭୂତ ଅସନ୍ତୋଷର ଏକ ବିସ୍ଫୋରଣ କହିଲେ ଯଥାର୍ଥ ହେବ । କ୍ରମରେ ବ୍ୟତିକ୍ରମ ଏକ ସାଧାରଣ ଘଟଣା । ଗାନ୍ଧିଜୀ କିନ୍ତୁ ଏହାକୁ ବରଦାସ୍ତ କରି ନଥିଲେ । ତାଙ୍କର ଅସହଯୋଗ ବନ୍ଦ ସିଦ୍ଧାନ୍ତକୁ ବିରୋଧ କଲେ ମୋତିଲାଲ ନେହେରୁ, ଦେଶ ବଂଧୁ ଚିତ୍ତରଞ୍ଜନ ଦାସ ପ୍ରମୁଖ ଛାମୁଆ ବାହିନୀର ମୁକ୍ତି ସଂଗ୍ରାମୀ । କିନ୍ତୁ ଜନତା ଗାନ୍ଧିଜୀଙ୍କୁ ଦେବତୁଲ୍ୟ ଜ୍ଞାନ କରି ଭକ୍ତି କରୁଥିଲେ, ଅନ୍ଧ ଭାବେ ସମର୍ଥନ ଦେଉଥିଲେ । ଭାରତୀୟ ଜାତୀୟ କଂଗ୍ରେସ ମଧ ଗାନ୍ଧିଙ୍କୁ ଛାଡି କୌଣସି ନୂତନ ପଦକ୍ଷେପ ନେବା ସମ୍ଭବ ହୋଇନଥିଲା । ଶେଷରେ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହୃତ ହେଲା । ସଚ୍ଚୋଟ ସତ୍ୟାଗ୍ରହୀମାନେ ଆଶ୍ରମରେ ଦାନ୍ତନିକୁଟି ପଡିରହିଲେ । ଆଜି ନହେଲେ କାଲିତ ସ୍ୱରାଜ ହବ ! ଆଉ ଦଳେ ଖୋସନ୍‌ବିସ୍ ନନ୍ କୋ-ଅପରେଟର, "ସେମାନେ ମାଛଧରି ଖାଇବାକୁ ମଜବୁତ୍, କିନ୍ତୁ ଦେହରେ ପଙ୍କ ଲଗାଇବାକୁ ନାରାଜ, ଖଦଡ଼ଟା ପିନ୍ଧିଥାନ୍ତି, ସହାନୁଭୂତି ଦେଖାନ୍ତି; ସ୍ଥାନ ବିଶେଷରେ ଦରକାର ପଡିଲେ ଆପଣାକୁ ଅସହଯୋଗୀର ପରିଚୟ ଦିଅନ୍ତି । ଏମାନେ

କାଉ, ଦୁଇକୂଳ ବଜାୟ ରଖି ଘରିଆଡେ ଉଡି ଉଡି ବୁଲନ୍ତି ।" ସୁଯୋଗ ଉଣ୍ଡି ଫାଇଦା ନିଅନ୍ତି । ଏପ୍ରକାର ଅସହଯୋଗୀମାନେ ତ ଦଳପାଇଁ ନିର୍ଭରଯୋଗ୍ୟ ହୋଇ ପାରନ୍ତିନି; କାଳେ କାଳେ ବୋଝ ହୋଇ ରହିଥାନ୍ତି ।

ସତ୍ୟାଗ୍ରହ ଚାଲିଥିଲା । ବିଚରା ଛାତ୍ର ସତ୍ୟାଗ୍ରହୀମାନେ ସ୍ୱରାଜ ଚାନ୍ଦା ଆଦାୟକରି କଷ୍ଟେ ମଷ୍ଟେ ଚଳି ଯାଉଥିଲେ । ଏବେ ସେ ଦ୍ୱାର ବନ୍ଦ, ତାଙ୍କ ପେଟକଥା, ମନକଥା କେହି ବୁଝିଲେନି । ଧୋବ ଧଉଳିଆ,ଖଦଡିଆ ଦେଖାହେଲେ ରାଜନୀତି, କୂଟନୀତି, ସମାଜନୀତି ଚର୍ଚ୍ଚା କରନ୍ତି । ଦେଖେଇ ଶିଖେଇ କହିଲେ ନୁଖୁରା ସମବେଦନା ପ୍ରକାଶ କରନ୍ତି । ବାଳ-ଅସହଯୋଗୀଙ୍କ ଅସୀମ ଧୈର୍ଯ୍ୟ, ସାହସ, ସହନଶୀଳତାକୁ ସେମାନେ ପ୍ରଶଂସା କରନ୍ତି । ମନଟାକୁ ସିକାଉପରକୁ ଟେକି ଦିଅନ୍ତି । ଏଥିରେ କ'ଣ ଭୋକିଲା ପିଲାଙ୍କ ପେଟ ପୂରେ ନା' ପୂରିଲା ?

ଅସହଯୋଗ ଅନେକ ମେଧାବୀ ଛାତ୍ରଙ୍କୁ କରିଦେଲା ନିଷ୍କର୍ମା । ଅପରପଟେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହାରକୁ ଅନେକ ନେତା ସମାଲୋଚନା କଲେ । ଚିତ୍ତରଞ୍ଜନ ଦାସ, ମୋତିଲାଲ ନେହେରୁଙ୍କ  ସହ ମିଶି ଗାନ୍ଧିଜୀଙ୍କୁ ବିରୋଧ କଲେ । ସେମାନଙ୍କ ମୂଳ ଦାବି ଥିଲା ସ୍ୱରାଜ । ଏଥି ସହିତ ନିର୍ବାଚନରେ ଭାଗନେବା ପାଇଁ ସ୍ଥିର କଲେ । ସ୍ୱରାଜପାର୍ଟି ମଧ୍ୟ ଗଠନ କଲେ । ଯେଉଁମାନେ ବିଧାୟକ ପରିଷଦରେ ରହି ସରକାରଙ୍କୁ ବିରୋଧ କଲେ ସେମାନଙ୍କୁ 'ପରିବର୍ତ୍ତନବାଦୀ' କୁହାଗଲା । ତାଙ୍କୁ ବିରୋଧ କରୁଥିବା ନେତାଙ୍କୁ ପରିବର୍ତ୍ତନ ବିରୋଧୀ କୁହାଗଲା । ସ୍ୱରାଜପାର୍ଟି ୧୯୨୩ ମସିହା ପରିଷଦ ନିର୍ବାଚନରେ କିଛି ସ୍ଥାନ ହାସଲ କଲା ଚିତ୍ତରଞ୍ଜନ ଦାସଙ୍କ ନେତୃତ୍ୱରେ । ଏହା ତାଙ୍କପାଇଁ ଏକପ୍ରକାର ସଫଳତା; କିନ୍ତୁ ୧୯୨୨ମସିହାରେ ଅନୁଷ୍ଠିତ କଂଗ୍ରେସ ସଭାପତି ନିର୍ବାଚନରେ ସେ ହାରିଗଲେ । ହେଉପଛେ କ୍ଷମତାଲିପ୍ସା, ନିର୍ବାଚନ ଲଢିବା ସିଦ୍ଧାନ୍ତ ହେତୁ ଅନେକ ସତ୍ୟାଗ୍ରହୀଙ୍କୁ ସାହାରାହା ମିଳିଗଲା । ସେଇ କଥାକୁ  ଛାତ୍ର ସତ୍ୟାଗ୍ରହୀଟି କହେ, "ଚିତ୍ତରଞ୍ଜନ ଦାସ ବାହାରି ନଥିଲେ ଆମ ଦଶା କ'ଣ ହୋଇଥାନ୍ତା କିଏ ଜାଣେ ! ହାୟ ! ସେ ମହାତ୍ମା ସ୍ୱର୍ଗକୁ ଚାଲିଗଲେ ଅକାଳରେ; କିନ୍ତୁ ତାଙ୍କ ଜୀବନର ସର୍ବପ୍ରଧାନ କାର୍ଯ୍ୟଟି ସେ ସାରି ଯାଇଛନ୍ତି । ତାହା ଏହି ଅନାଥ ଗୁଡିକଙ୍କର ଗୋଟିଏ ଗତି କରିଦେବା । ଏଥିପାଇଁ ଆମର ସହସ୍ର ସହସ୍ର ଧନ୍ୟବାଦ ସେ ସଙ୍ଗରେ ଘେନି ଯାଇଛନ୍ତି ଓ ଯାବତ୍ ଚନ୍ଦ୍ରାର୍କେ ଆମର ତଳ ସପ୍ତପୁରୁଷ ତାଙ୍କ ଠାରେ ଋଣୀ ରହିବେ ।"

ଗାନ୍ଧିଜୀ ଆରମ୍ଭ କଲେ ରଚନାତ୍ମକ କାର୍ଯ୍ୟକ୍ରମ । ଅରଟରେ ସୂତାକାଟିବାକୁ ସତ୍ୟାଗ୍ରହୀଙ୍କୁ ପରାମର୍ଶ ଦେଲେ । ଅନ୍ୟକିଛି କାର୍ଯ୍ୟ ନଥିବା ହେତୁ ଏହା ସତ୍ୟାଗ୍ରହୀଙ୍କୁ ଅଳସୁଆ କରିଦେଲା । ଏହାର କୁପ୍ରଭାବ ମଧ୍ୟ ତାଙ୍କ ଭବିଷ୍ୟତ ଜୀବନରେ ପରିଲକ୍ଷିତ ହେଲା । ଦୈନିକ ସୂତା କାଟିବା ସେମାନଙ୍କର ଗୋଟିଏ ପ୍ରଧାନ ଦାୟିତ୍ୱ । ଏଥିପାଇଁ ପ୍ରତ୍ୟେକ ଗୋଟେ ଗୋଟେ ଅରଟ ରଖିବାକୁ ବାଧ୍ୟ । ସେଇଟା ଯେତେ ବୁଲିବ ଆତ୍ମାଟା ସେତିକି ମୁକ୍ତ ହୋଇଯିବ । କିନ୍ତୁ ଅରଟ ସ୍ୱାଧୀନତା, ସ୍ୱେଚ୍ଛାଚାରରେ ବାଧା ଦେଇଛି । ଏକଥା ଭୁକ୍ତଭୋଗୀଟି ହିଁ ଜାଣେ । ଦୂରଦର୍ଶୀ ଲକ୍ଷ୍ମୀକାନ୍ତ ଛାତ୍ର ଅସହଯୋଗୀ ମୁହଁରେ କୁହାଇଛନ୍ତି, "ସୂତାକଟା ଅଡୁଆଟା ନଥିଲେ ଆମେ ପରା ଦେଶର ଆହୁରି କେତେକ ଭଲକାମ କରି ଜାତିଟାକୁ ଆହୁରି ପଚାଶବର୍ଷ ଆଗକୁ ପେଲି ନେଇ ଯାଇପାରିଥାଆନ୍ତୁ । ଏହି ଅରଟ ଆମ ଛାତି ଉପରେ ଗୋଟାଏ ଓଥରାଭଳିଆ ମାଡିବସି ରହି ଆମକୁ କିଛି କରାଇ ଦେଲାନି । ସୂତାକଟା ମାଇକିନିଆ, ଅଳସୁଆ ଆଉ ବୋକାମିର କାମ, ଆମ ଭଳିଆ ଚଲାଖ ଚତୁର, ବୁଦ୍ଧିମାନ କର୍ମକ୍ଷମ ଦିନରାତି ବସି କେଁ କଟର କରିବା କ'ଣ ଶୋଭାପାଏ ? ଆମ ସମୟର ମୂଲ୍ୟ କେତେ, ଆମ ପରିଶ୍ରମର କିମ୍ମତ କ'ଣ ?" ଗାନ୍ଧିଜୀଙ୍କ ସୂତାକଟା କାର୍ଯ୍ୟକ୍ରମରୁ ଯେଉଁ ସୁଫଳ ମଳିବା କଥା ତା'ତ ସ୍ୱାଧୀନତା ପୂର୍ବରୁ ମିଳିଲାନି, ସ୍ୱାଧୀନତାପରେ ମଧ୍ୟ ସେଇ କଥା । ଗାନ୍ଧିଜୟନ୍ତୀ, ସ୍ୱାଧୀନତା ଦିବସରେ ନେତା, ଛୋଟବଡ କୁଜି ନେତାଏ ଖଦଡ ପିନ୍ଧନ୍ତି, ବର୍ଷକେ ଥରେ ଦିଥର ହେଉପଛେ ଅରଟ ବାହାରେ, ସୂତାକଟା ଚାଲେ, ଆମେ ଦେଖେଇ ହଉଁ, ଆମେ ପରା ଗାନ୍ଧିଙ୍କର ପଟ୍ଟଶିଷ୍ୟ !

ଚିତ୍ତରଞ୍ଜନ ଦାସ ଗୋଟେ ନୂଆ କଥା କହିଲେ । ଚରଖା, ସୂତାକଟାକୁ ସେ ବିରୋଧ କଲେନି; ଏଥିପାଇଁ ଥିବା ବାଧ୍ୟ ବାଧକତା ବିରୁଦ୍ଧରେ ସ୍ୱର ଉଠାଇଲେ । ସ୍ପଷ୍ଟ କରିଦେଲେ ଏହି ରଚନାତ୍ମକ କାର୍ଯ୍ୟକ୍ରମ ଶୈଳୀକୁ, "ନାହିଁ ଅରଟ କଟାଟାରେ ବାଧ୍ୟ ବାଧକତା ନାହିଁ, ଯାହାର ଇଚ୍ଛା ସେ ପଛେକେ କାଟୁଥାଉ । ସେ ପହିଲୁ ଗାନ୍ଧିଙ୍କର କଥା କାଟିଲେ, ସେହି ପରି ପୁଅ ହୋଇନଥିଲେ ଏୟା କିଏ କରନ୍ତା । ସେ ଦେଖିଲେକି ସ୍ୱେଚ୍ଛାସେବୀ କର୍ମୀମାନଙ୍କୁ କାମ ନଦେଲେ ସେମାନେ ବେକାର ହୋଇଯିବେ, ତାଙ୍କ ମତରେ ଅସହଯୋଗୀଏ କର୍ମୀ; ସବୁବେଳେ ବାହାରେ ରହିବାର ଆବଶ୍ୟକତା ନାହିଁ । ତାଙ୍କ ମତଥିଲା ଯେତେବେଳେ ଦରକାର ଅସହଯୋଗ କର; ପୁଣି ବେଳକାଳ ଉଣ୍ଡି

ସହଯୋଗ କର ।" ସେ ମେଲା ହୁକୁମ୍ ଦେଲେ, " ପଶ କାଉନ୍‌ସିଲ୍‌ରେ, ପଶ ମ୍ୟୁନିସ୍‌ପାଲଟିରେ, ପଶ ଜିଲ୍ଲା ବୋର୍ଡରେ - ଯେଉଁଠି ଯେଉଁ ସୁବିଧା ପାଅ ଛାଡ ନାହିଁ । ସବୁ ଅସହଯୋଗୀ ଦଳରେ ଛାଇ ପକାଅ । ମାନମାରି ରହିଲେ ଆଉ ଚଳିବ ନାହିଁ, ନିଶୁଆ ତେଲି ପରି ଚାଲ ପେଲି ।" କ୍ଷମତା ରାଜନୀତିର ଗାନ୍ଧିଜୀ ଥିଲେ ଘୋର ବିରୋଧୀ, ଏପଟେ ସ୍ୱରାଜ ପାର୍ଟିବାଲା ନିର୍ବାଚନ ଲଢ଼ିବାକୁ ପ୍ରୋତ୍ସାହନ ଦେଲେ । ଯେଉଁ ସତ୍ୟାଗ୍ରହୀମାନେ ଆଶ୍ରମ ଛାଡି ପଳାଇଥିଲେ, ପୁନଃ ତାଙ୍କୁ ମିଳିଗଲା ଅପୂର୍ବ ସୁଯୋଗ । ଏବେ ପଦପଦବୀ ଆଶାରେ  ବିଭୋର ହେଲେ ।

କ୍ଷମତା ମୋହ ମଣିଷକୁ ବାଟଭୁଲା କରିଦିଏ । ଅନେକ ଗାଦିରେ ରହି କ୍ଷମତାର ଅପବ୍ୟବହାର କରନ୍ତି । ଏପ୍ରକାର ମାନସିକତା ମୁକ୍ତି ସଂଗ୍ରାମ କାଳରୁ ଆରମ୍ଭ ହେଲା । ପଳାଇ ଯାଇଥିବା ଅସହଯୋଗୀଙ୍କ ମଧ୍ୟରୁ ଅନେକ ଫେରିଲେ । ମେଘ ବରଷିଲେ ଧାନ ବିଲରେ ଯେପରି ଛତୁପରି ବାଲୁଙ୍ଗା ଉଠେ, କୁଆଡେ ବରଷଯାକ ଶୋଇଥିଲେ ଭାଇମାନେ, ଆଷାଢ଼ ମାସ ପଚ୍ଛ ଗହିଡାରେ ବେଙ୍ଗ ପହଣା ପରି ଆଶ୍ରମରେ ପୁଣି ଆସି ସାଲୁବାଲୁ ହୋଇଗଲେ । ଲାଗିଲା ଚାରି ଆଡେ ଭୋଟ-ଭୋଟ, ଭୋଟ ନିଶା । ଏହି ଭୋଟ ଗୋଳ ଆଶ୍ରମକୁ ଚଳଚଞ୍ଚଳ କରିଦେଲା, ନୂତନ ଜୀବନୀ ଶକ୍ତି ପ୍ରଦାନ କଲା । କେତେ କ'ଣ ବିଚାର ବିମର୍ଷ; ଚିଠିପତ୍ର, ଯିବା ଆସିବା ଦୌଡା ଦୌଡି ହୈ ହୈ- ଚୈ ଚେ କାଣ୍ଡ ଚାଲିଲା । ଏଣିକି ସ୍ୱରାଜ ଚାନ୍ଦାକୁ ବା ପଚାରେ କିଏ? ପ୍ରାର୍ଥୀମାନେ ଖରଚ ଯୋଗାଇଲେ; ଉଦ୍ଦେଶ୍ୟ ଲୋକ ଶିକ୍ଷା, ଲୋକ ଶିକ୍ଷା ବୋଇଲେ ଅପର ପକ୍ଷର କୁତ୍ସାରଟନା, ଆଉ ନିରୀହ ଭୋଟରଙ୍କୁ ଭୁଲାଇବା । ଏପ୍ରକାର ସ୍ଥିତାବସ୍ଥା ସ୍ୱାଧୀନତା ପୂର୍ବରୁ; ଅଧୁନା ଏହା ଉଗ୍ର ଆକାର ଧାରଣ କଲାଣି । ଏକଥାକୁ କାନ୍ତକବି ବହୁ ଆଗରୁ ଅନୁମାନ କରିନେଇଥିଲେ ।

ନିର୍ବାଚନରେ ଲଢ଼ିବାପାଇଁ ଭାରି ଗୋଟାଏ କନ୍ଦଳ ଲାଗିଲା । ସ୍ୱରାଜ ପାର୍ଟି ପକ୍ଷରୁ ଟିକେଟ ବଣ୍ଟା ହେଲା । ଜଣଙ୍କ ନାଁ କହିଲେ ଆର ଜଣକ ମୁହଁ କଲା ପେଡିପରି । କଥା କଟାକଟି ଚାଲିଲା, କେହିତ କାହାକୁ ଊଣା କୁହନ୍ତି; ନିଜ ହାତରେ ଚଉଦପା । ନେତାମାନେ ସବୁ 'ଦେତା' ମାନଙ୍କର ମନ ରଖିବାକୁ ପଡିବ, ସେଥି ସକାଶେ ବୋଝେ ଅତୁଆ । କଟକିଆ ବାଲେଶ୍ୱରିଆଙ୍କ ଶିରି ଦେଖୁନାହାନ୍ତି, ପୁରୀଆ କଟକିଆଙ୍କ ଶିରି ଦେଖୁ





ନାହାନ୍ତି । ତା'ଛଡା ବାଲେଶ୍ୱର ବା କଟକ, ପୁରୀରେ ସମସ୍ତେ ଆପଣାଙ୍କୁ ନେତାବୋଲି ମଣୁଛନ୍ତି । ଏ ତ ଘର କଥା, ବାହାରେ ଅନେକ ଶତ୍ରୁ; ଖୁବ୍ ବଳବାନ ମଧ୍ୟ । ବାହାର ବାଲାଙ୍କୁ କିଣିବାକୁ ପଡ଼ିବ, ଏଥିପାଇଁ ଦରକାର ଅର୍ଥ, କୌଶଳ, ଅନ୍ୟର ମଧ୍ୟସ୍ଥତା । ଏ କୌଶଳ ଅନେକଙ୍କୁ ମାଲୁମ ଥିଲା ସେତେବେଳେ । ଏପ୍ରକାର କାରସାଦିକୁ ଲକ୍ଷ୍ମୀକାନ୍ତ ବଡ଼ ଚମତ୍କାର ଢ଼ଙ୍ଗରେ ବଖାଣିଛନ୍ତି, "ରାଜନୀତି ଖେଳ ବଡ଼ ବିଷମ, ଦେଖିନେଲୁ ଆମେ ବାହାରଲୋକଙ୍କୁ କିଏ ଆମ ସାଙ୍ଗରେ ଲଢ଼ିବେ, ସେଇମାନଙ୍କୁ ବାଛି ବାଛି ଇମିତି ଘୁରୁଘୁରିଆ ପକାଇବାକୁ କରିଦେଇଛୁ ଯେ, ସେ ଆଉ ଲଢିବାକୁ ବାହାରିବେ ନାହିଁ ବା କେହି ଆପଣାର କରି ବାହାରିଲା ବେଳକୁ ଘାଉଲା ହୋଇ, ଦୁର୍ବଳ ହୋଇ ବାହାରିଥିବେ । ଏହି ଉଦ୍ଦେଶ୍ୟରେ ଜଣକୁ ଜଣ ଶିଖେଇ ବୁଝେଇ, ଆଶା ଆଶ୍ୱାସନା ଦେଇ ଆମ ଭିତରକୁ ଟାଣି ନେଇଛୁଁ, ଆଉ ବାଗରେ ପଡ଼ିଗଲେ ତେଣିକି ଇମିତି ଘାଏ ମାରୁଛୁଁ ଯେ, ତାଙ୍କ ଗୋଡ ହାତ ଭାଙ୍ଗି ଯାଉଛି । ସେ ଅପ୍ରତିଭ, ଅପଦସ୍ଥ, ଅପମାନିତ ହୋଇ ହତାଶରେ ମେରୁଦଣ୍ଡ ଭଙ୍ଗା ହୋଇ ରହିଯିବ ଯେପରି ।" ଫଳରେ ଯେତେ ପାଠ ଯେ ପଢ଼ିଥାନ୍ତୁ, ଯେତେ ଅଭିଜ୍ଞତା ଲାଭ କରିଥାନ୍ତୁ, ଯେତେ ବୟସ୍କ ହୋଇଥାନ୍ତୁ, ରାଜନୀତିର କୂଟାସ୍ତ୍ର ଚଳାଇବାରେ କୂଟଚକ୍ରାନ୍ତକାରୀ ଅସହଯୋଗୀ ନେତାଙ୍କ ସମକକ୍ଷ କେହି ନୁହେଁ । ଖବର କାଗଜ ତାଙ୍କ ହାତରେ; ଯେତେ ଲେଖିଲେ କିଏ ପଚାରେ ? ଅଳିଆ ଗଦାରେ ଫିଙ୍ଗାଯାଏ; ଛାପା କଥା ନାସ୍ତି । ଦେଶକୁ ସେମାନେ ହାତ ପେଣ୍ଟରେ ରଖିଲେ । ସତ୍ୟାଗ୍ରହୀଟି ବଡ଼ ଟାଣରେ କହେ, " ଆମ ବିପକ୍ଷରେ ଛିଡ଼ା ହେଲେ, ତାଙ୍କୁ ଅନ୍ୟ ଆଗରେ ସାନ କରିଦେବୁଁ । ଆମର ଖୁବ୍ ଆଶା ଅଛି, ଏ ଓଡ଼ିଆ ଜାତି, ଯାହାଙ୍କୁ ଆମେ ଖୁବ୍ ଚିହ୍ନିଛୁ, ଏମାନେ ବାସ୍ତବିକ ମେଣ୍ଢାଭଳି । ଆମେ ଯେଉଁ ବାଟରେ ଚଳାଇବୁଁ, ସେହି ବାଟରେ ଚାଲିବେ । ଛଳେ, ବଳେ, କୌଶଳେ ଭୋଟ ଗୁଡ଼ାକ ଥରେ ମାରିନେଲା ପରେ ଆମର ପାଇଟି ସରିଲା । ଆଉ ସେ କିଏ ଆମେ ବା କିଏ ?" କାଣିଆ କପିଳାଙ୍କ ଭେଟା ଭେଟି ପୁଣି ପାଞ୍ଚ ବର୍ଷପରେ । ଏଣିକି ନୂଆନୀତି, ନୂଆ କୌଶଳ । ଜନତାଙ୍କୁ ତ ଭଣ୍ଡେଇବାକୁ ହେବ; ନହେଲେ ଗାଦି ଚାଲିଯିବନି ?

(୭)

ଜଗଦିଶ୍ୱରଙ୍କ ରାଜ୍ୟରେ କିଛି ସ୍ଥିର ନୁହେଁ-ତହିଁକି ରାଜନୀତି ରାଜ୍ୟରେ ସବୁ ଆହୁରି ଅସ୍ଥିର । ଏକଥାଟି ପ୍ରାକ୍‌ସ୍ୱାଧୀନତା କାଳରୁ ଅନୁଭୂତ । ଏପରିକି ମହାତ୍ମାଗାନ୍ଧିଙ୍କ ପରି ସଦାଚାରୀ ନେତାଙ୍କୁ ମଧ୍ୟ ଏକ ବଡ଼ ବିରୋଧର ସମ୍ମୁଖୀନ ହେବାକୁ ହେଲା । ଏହା କ'ଣ କିଏ ବିଶ୍ୱାସ କରିଥିଲା ? ଗାନ୍ଧି ଅସହଯୋଗ ଆନ୍ଦୋଳନକୁ ପ୍ରତ୍ୟାହାର କଲେ; ତାଙ୍କୁ ବିରୋଧ କରିଥିବା ନେତାମାନେ ସ୍ୱାରାଜ ପାର୍ଟି ଗଠନ କଲେ । କ୍ଷମତା ମହୁ-ସ୍ୱାଦ ପାଇବାକୁ ବହୁ ଅସହଯୋଗୀ ଦଳରେ ସାମିଲ ହେଲେ । ଏମାନେ ଗାନ୍ଧିଙ୍କୁ ଛାଡିଲେ; କିନ୍ତୁ ତାଙ୍କ ନାଁକୁ ଛାଡି ପାରିଲେନି । ତାଙ୍କରି ନାଁ ବିକି ଭୋଟ ମାଗିଲେ । ଗୋଟେ ପ୍ରକାର ନୈତିକ ସ୍ଖଳନ କ୍ରମେ ଅସହଯୋଗୀଙ୍କ ଠାରେ ପରିଲକ୍ଷିତ ହେଲା । କ୍ଷମତା ଲୋଭରେ ଅନେକ ନେତା ବିଭିନ୍ନ ପ୍ରକାର ଫନ୍ଦି କାଢ଼ିଲେ, ଖଚ, ଚୁଗିଲି କଲେ; ଅନ୍ୟ ନାଁରେ ନାନାପ୍ରକାର ବଦନାମ ଦେଇ ଭୋଟ ଲଢ଼ିଲେ । ଏପ୍ରକାର ଚିନ୍ତନରେ ସ୍ୱୟଂ ଗାନ୍ଧି ମର୍ମାହତ ହେଲେ, ଠିକ୍ ସେମିତି ବହୁ ନୀତିନିଷ୍ଠଙ୍କୁ ଏକଥା ବ୍ୟଥା ଦେଲା । ଗୋଟେ ଜାତିର ରାଜନୀତିକ ପରିବେଶ ଯେ ଆଗାମୀ ଦିନରେ କଳଙ୍କିତ ହୋଇଯିବ; ଏକଥା ଦେଶଭକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର ପୂର୍ବାନୁମାନ କରିନେଇଥିଲେ । ଏକ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ନେଇ କ୍ଷମତା ପାଗଳ ତଥା ମିଛ ଦେଶପ୍ରେମୀଙ୍କ ମୁଖା ମଧ୍ୟ ଖୋଲିଦେଲେ ।

ଚାଲିଲା ଗାନ୍ଧିଙ୍କ ନାଁ, କିଣା ବିକା । ଲୋକେ ପ୍ରାର୍ଥୀଙ୍କ ନାଁ ଜାଣିଲେନି; ତାଙ୍କ ଖାତା, ଖତିଆନ, ଗାଁ ଠିକଣାକୁ କିଏ ପଚାରେ ? ସ୍ୱାରାଜପାର୍ଟିର କେତେକ ନେତା ପ୍ରଚାରକଲେ; ଗାନ୍ଧିଜୀଙ୍କ ଆଦେଶ ମିଳିଛି, ଅମୁକରଙ୍ଗର ବାକ୍‌ସରେ ଭୋଟ ଦେବ-ବାସ୍ ଏତିକି । ବିନା ବାଛବିଚାରରେ ଦଳଦଳ ଲୋକ ଭୋଟ ଦେଇଗଲେ ସେଇ ବାକ୍‌ସରେ । କେବଳ ଗାନ୍ଧି ବାକ୍ସ ବୋଲି ପ୍ରାର୍ଥୀ ଜିତିଲେ । ବଡ଼ଲାଟ ସଭା, ସାନଲାଟ ସଭା, ମ୍ୟୁନିସ୍‌ପାଲଟି, ଜିଲ୍ଲାବୋର୍ଡରେ ସ୍ୱରାଜ ପାର୍ଟି ନେତା ପଶିଲେ । ବୁଲା ଭଟକା, ମାଗିଖିଆ, ଅନାମିକା, କେତେ ରକମର ଲୋକେ ଆସି ଖଦଡ଼ ବାନା ବଳରେ ବଡ଼ ବଡ଼ ନାଁ ମାରିନେଲେ । ଛାତ୍ର ଅସହଯୋଗୀଟିର ମଧ୍ୟ ନେତା ହେବାକୁ ମନ ବଳିଲା । ଅସମୟରେ ଯିଏ ଯୁଆଡେ ଚାଲିଗଲେ, ସେଇ ଏକା ଆଶ୍ରମ ଜଗିରହିଥିଲା । ଏବେ ରୋଜଗାର ବେଳକୁ ତାକୁ କେହି ପଚାରୁନାହାନ୍ତି । ତା'ପରି କେତେଜଣ ଦଳ ଛଡେଇଲେ,

ଆଉ କଉ ଖାଇଲା କିଏ ? ଚେୟାରମେନ, ଭାଇସ୍ ଚେୟାରମେନ, କେତେପ୍ରକାର ହୋଇଗଲେ । କିନ୍ତୁ ଛାତ୍ରଟିକୁ ବୁଝାଇ ଦିଆଗଲା- 'ତୁମେ ଏଥିରେ ପଶିଲେ ଆଶ୍ରମ ଖରାପ ହୋଇଯିବ' । ସ୍ୱରାଜ ଦଳ କାର୍ଯ୍ୟ ଖରାପ ହୋଇଯିବ । ଛାତ୍ରଟି ମଧ୍ୟ ନିଜ ମନ କଥା କହେ, "ମୁଁ ସହଜିଆ ସ୍ୱଭାବର ଲୋକବୋଲି ମୋତେ ଭଣ୍ଡେଇ ଦେଇ ସବୁ ମାଲାମାଲ ହୋଇଗଲେ । ମୁଁ ଖାଲି ଜଳକା ହୋଇ ରହିଁରହିଲି । ମୁଁ ଖାଲି ମେମ୍ବର ପଦଟିଏ ପାଇ ଖୋସ୍" ସଭିଁଙ୍କୁ ଘାରିଲା କ୍ଷମତା ନିଶା, ବଡ ସାନ ସବୁ ସମାନ । ଏପ୍ରକାର ସ୍ଥିତିରେ ମୁକ୍ତି ଯୁଦ୍ଧ ଗୌଣ ହେଲା, ଏଣିକି ଲୋଡା ପଦପଦବୀ । ଦୀପ ତେଜିଲେ ସିନା ହାତ ଚିକ୍‌କଣ ହେବ !

ନିର୍ବାଚିତ ପ୍ରତିନିଧିମାନେ ସେବା, ତ୍ୟାଗ ଭୁଲିଲେ; ଆପଣା ଆପଣା ସ୍ୱାର୍ଥରେ ବୁଡିରହିଲେ । ଏପ୍ରକାର ନୈତିକ ଦୁର୍ଗତି କଥା କାନ୍ତକବି ଉଲ୍ଲେଖ କଲେ, "ଜିଲ୍ଲାଯାକର ରାସ୍ତା, ଫେରି, ପୋଲ, ଡାକବଙ୍ଗଳା, ପୋଖରୀ ଖୋଳା, ଡାକ୍ତରଖାନା, ଇସ୍କୁଲ, କାଞ୍ଜିଆହଡା, ସବୁ ଆମହାତରେ ରହିଲା । ଜିଲ୍ଲାଟାଯାକ ମାଷ୍ଟର, ଡାକ୍ତର, ଓଭରସିଅର, ସବୁ ଆମ ଚାକର । ଆଉ ସେକ୍ରେଟାରୀ, କାନ୍ତରାଟକାର ପ୍ରଭୃତି ଆମର ତାବେଦାର । ନଷ୍ଟ ପସରା ଉଠିଲା, ମାନ ଖାତର ପୁଣି ବଢ଼ିଲା । ଏତେଗୁଡିଏ ପଇସା ଆମ ହାତରେ ରହିଲା ଯେଣୁ କେତେ କେତେ ଲୋକ ଆମର ଅନୁସରଣ କଲେ ।" ହଠାତ୍ ସ୍ଥିତି ବଦଳିଗଲା । ଦିନଥିଲା ହରତାଳକାରୀମାନେ ଗାଁ ଗାଁ ବୁଲୁଥିଲେ । ମହାତ୍ମାଗାନ୍ଧିକି ଜୟ, ଭାରତମାତାକି ଜୟ, ବନ୍ଦେମାତରମ୍, ଇନକିଲାବ ଜିନ୍ଦାବାଦ, ଇଂରେଜଶାସନ ଚଳିବ ନାହିଁ, ଚଳିବ ନାହିଁ- ଏମିତି କେତେ କ'ଣ ଜୟଜୟକାର କଲେବି ଥଣ୍ଡାପାଣି ଗିଲାସେ କି ଚା'କପେ କେହି ଦେଉନଥିଲେ, ମୁଠାଏ ମୁଠାଏ ଖାଇବାକୁ ମିଳୁନଥିଲା ସହଜରେ । ଏବେ ମଫସଲରେ ଛ'ତିଅଣ ନ'ଭଜାର କୁଣିଆ । ବଡ଼ବଡିଆ ନେତାଙ୍କ ପାଖ ମାଡିହେଲାନି । ସାନ ସାନିଆ ମାନେ ବି କମ୍ ଲାଭରେ ରହିଲେନି । ଗସ୍ତ ଖର୍ଚ୍ଚ, ଯିଏ ଇଲାକା ମଧ୍ୟରେ ଯେତେ ଗସ୍ତ କରିପାରିବ, ତା'ର ସେତେ ଲାଭ । ତା'ଛଡା ଭେଟିଟାଏ ରୁଟିଟାଏ ମିଳେ,ସେକଥା ଛାଡ । ଏମିତି କେତେ କ'ଣ ରୋଜଗାର, ହାତ ଛପେଇ । ପୁଣି ନେଇଆଣି ଥୋଇ ଜାଣିଲେ; ଆହୁରି ଅନେକ ମିଳିଲା, ଅଭାବ, ଅନଟନ ରହିଲାନି । ଏଣିକି ମଉଜ, ଆରାମ, ଅୟସ ।

ଦିନ କେଇଟାର କଥା, ସବୁ ଓଲଟପାଲଟ ହୋଇ ଗଲାଣି । ଏବେ ଘରଣୀ, ଆଠଣୀର ଭିକ ଲୋଡା ନାହିଁ; ମୋଟା ଅଙ୍କର ରୋଜଗାର ହେଉଛି । ଛାତ୍ରଟି ଏଇକଥାକୁ ବଖାଣେ, "ଆଉ ଗରିବ ସାଧାରଣଙ୍କ ଠାରୁ ଘଉଳ ସେରେ ପଇସା ଘରିଅଣା ଆମ ନଜରରେ ପଡେ ନାହିଁ, ଆମେ ଏବେ ଧରୁଁ ବଡ ବଡିଆଙ୍କୁ- ଯେଉଁଠି ହାତ ପକେଇଲେ ମୁଠା ପୂରିବ । ଚୂନା ଚୋପରାଙ୍କୁ ପଚ୍ଛରେ କିଏ ? ଆଗେ ସାକୁଳା ସାକୁଳିକରି ମାଗୁଁ- ଯେ ଆମ ଗରଜ ମେଣ୍ଟାଇଲା ସେ ସୁନାପୁଅ, ଯେ ମନାକଲା ଲାଗିଲୁଁ ଆମେ ତା'ପଛରେ । ଯେପରି ହେଉ ଆମେ ତାକୁ ବିପଦରେ ପକେଇ ଦବୁଁ । ଆମର ଏଇ କ୍ଷଣି ଅନେକ କ୍ଷମତା, ଖବର କାଗଜମାନ ଆମ ହାତରେ । ହାକିକମାନେ ଆମକୁ ଡରନ୍ତି । ଆହୁରି କେତେ ରକମ କ'ଣ ଅଛି । ଯେତେ ଟାଣୁଆ ହେଲେ କ'ଣ ହବ, ଶେଷରେ ସେ ଆମ ହାତ ମୁଠାରେ । ଏମିତି ଦିବର୍ଷ ଚ୍ଛଲିଗଲା, ନିର୍ବାଚନ ଆଉ ତିନିବର୍ଷ ପରେ । ଏବେଠାରୁ କ'ଣ କିଛି ନକଲେ ଆମକୁ ମହା ବିପତ୍ତି !" ଓଡ଼ିଆ ଲୋକଗୁଡାକ ଇଂରାଜୀ ପଢ଼ିନାହାନ୍ତି, ନିହାତି ସରଳ । ତାଙ୍କୁ ଓଲୁ ନ ବନେଇଲେ ତ ଭୋଟ ମିଳିବ । ତଥାପି ନେତାଙ୍କ ଆଶଙ୍କା; ଯାହାହେଲେବି ସେମାନେ ମଣିଷ, ତାଙ୍କୁ କ'ଣ ସବୁ ଦିନେ ଭଣ୍ଡି ରଖିହେବ ?

ଆସିଲା ପୁଣି ନିର୍ବାଚନ । ଲୋକେ ଏବେ ଆଉ ପୁରୁଣା କଥାରେ ଭଲୁ ନାହାନ୍ତି । ନୂଆ ବ୍ୟବସ୍ଥାର ଆୟୋଜନ ହେଲା, ସମ୍ମିଳନୀ ଉପରେ ସମ୍ମିଳନୀ, ଜିଲ୍ଲା ସମ୍ମିଳନୀ, ସବ୍‌ଡିଭିଜନ ସମ୍ମିଳନୀ, ଥାନା ସମ୍ମିଳନୀ, ସଭାସମିତି; ତଣ୍ଡିଫଟା ଭାଷଣ ଚ୍ଛଲିଲା । ତେଣେ ବିପକ୍ଷ ଦଳ ସଜବାଜ ହେଲେଣି । କିନ୍ତୁ ସେମାନଙ୍କ ହାତରେ ଥିଲା ଖବର କାଗଜ ନା ଦଳଗତ ପ୍ରଚେଷ୍ଟା, ଏଣେ ଗାନ୍ଧିଜୀ ରାଜନୀତିକ କ୍ଷମତାକୁ ବିରୋଧ କଲେ; ସ୍ୱରାଜ ପାର୍ଟି ବାଲାଙ୍କର କିନ୍ତୁ କ୍ଷମତା ପାଇଁ ଝୁଙ୍କ, ନିଜର ରାଜନୀତିକ ଉଦ୍ଦେଶ୍ୟ ଚରିତାର୍ଥ ପାଇଁ ଗୋଟେ ନୂଆ ବୁଦ୍ଧି କାଢ଼ିଲେ, ଗାନ୍ଧିଙ୍କର ସେଇଟା ଭୁଲ ଥିଲା ବୋଲି ଯୋଖିଁ ଦେଲେ, ଏଣେ ମୂଳରୁ ଘୁଣ ଖାଇଲା । ଏବେ ଯେତେ କଳିଗୋଳ ସବୁ ରାଜନୀତିକ କ୍ଷମତା ଅବା ଚ୍ଛକିରୀ ସକାଶେ । ଏକ ବିଚିତ୍ର ପରିସ୍ଥିତି ସୃଷ୍ଟି ହେଲା । ସ୍ୱରାଜଦଳିଆ ଗାନ୍ଧିଙ୍କୁ ସଂପୂର୍ଣ୍ଣ ମୂର୍ଚ୍ଛିପାରିଲେ ନା ତାଙ୍କ କଥା ପୂରା କାଟି ପାରିଲେ । ଏବେ ବର୍ଷା ଯୁଆଡେ ସିଆଡେ ଛତା । ଯେତେବେଳେ ଯେଉଁ ସୁବିଧା ହେଲା, ସିଆଡେ ଢଳିଲେ । ପୁନଶ୍ଚ ହିନ୍ଦୁ ମୁସଲମାନ କ୍ଷମତା କନ୍ଦଳ । ଗାନ୍ଧିଜୀ ଉଭୟ ହିନ୍ଦୁ ମୁସଲମାନଙ୍କ ମେଳକଥା କହି କହି ପ୍ରକୃତ ଅମେଳଟା ସୃଷ୍ଟି କରିଦେଇଥିଲେ । ତାଙ୍କ ପୂର୍ବରୁ ଇଂରେଜମାନେ

କେତେକ ମୁସଲମାନ ନେତାଙ୍କୁ ହାତେଇ ନେଇଥିଲେ । ଏପରିକି ଇଂରେଜମାନଙ୍କ ପ୍ରରୋଚନାରେ ସୟଦ୍ ଅହମଦ୍‌ଖାଁ, ବାରଣାସୀର ରାଜା ଶିଓ ପ୍ରସାଦ 'ଭାରତୀୟ ଦେଶପ୍ରେମୀ' ନାମକ ଏକ ଅନୁଷ୍ଠାନ ଗଢ଼ିଲେ । ଭାରତୀୟ ଜାତୀୟ କଂଗ୍ରେସର ଚେନ୍ନାଇ ଅଧିବେଶନ (୧୮୮୭)କୁ ସେମାନେ ଭଣ୍ଡୁର କରିବା ଚେଷ୍ଟାରୁ ବିରତ ହୋଇନଥିଲେ । ଏକଦା ବାହାଦୂରଶାହାଙ୍କ ଇଂରେଜ ବିରୋଧରେ ବିଦ୍ରୋହ ଯୋଗୁଁ ସେମାନେ ମୁସଲମାନମାନଙ୍କୁ ପ୍ରଧାନ ଶତ୍ରୁ ମନେ କରୁଥିଲେ; ମାତ୍ର ପରବର୍ତ୍ତୀକାଳରେ ସେମାନଙ୍କୁ ପୃଷ୍ଠପୋଷକତା ଦେଇ, ହିନ୍ଦୁ ମୁସଲମାନ ଭେଦଭାବ ସୃଷ୍ଟି କଲେ, କଂଗ୍ରେସକୁ ସେମାନଙ୍କର ବିରୋଧୀଭାବେ ଦର୍ଶାଇଲେ । ବଡ଼ଲାଟ ମିଣ୍ଟୋ ମୁସଲମାନଙ୍କ ଏକ ସର୍ବଭାରତୀୟ ରଜନୀତିକ ସଂଗଠନ (ନିଖିଳ ଭାରତୀୟ ମୁସଲିମ୍ ଲିଗ୍) ସଲି ମୁଲ୍ଲା ଖାଁଙ୍କ ନେତୃତ୍ୱରେ ଗଠନ କଲେ (୧୯୦୬) । କିଛିଦିନପରେ ମୁସଲିମ୍ ଲିଗ୍ ମଧ୍ୟ ସ୍ୱରାଜ ଦାବିକଲା । ଏହି ଦଳର ମହମ୍ମଦ ଅଲ୍ଲୀ,ସୌକତ ଅଲ୍ଲୀ ନାମକ ଦୁଇଭାଇ ତୁର୍କୀ ସପକ୍ଷରେ ଯୁକ୍ତିବାଢ଼ି ଗିରଫ ହେଲେ (୧୯୧୫) । କିନ୍ତୁ ଲକ୍ଷ୍ନୌଚୁକ୍ତି (୧୯୧୬) ଉଭୟ ଜାତୀୟ କଂଗ୍ରେସ, ମୁସଲିମ୍ ଲିଗ୍ ମଧ୍ୟରେ ସ୍ୱାକ୍ଷରିତ ହୋଇଥିଲା । ଏଥିରେ ମୁସଲମାନ ମାନଙ୍କ ପାଇଁ ବ୍ୟବସ୍ଥାପକ ସଭାରେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ, ନିର୍ଦ୍ଧାରିତ ସ୍ଥାନ ସଂଖ୍ୟା ରଖାଯିବାର ନିଷ୍ପତ୍ତି ହେଲା । ପରବର୍ତ୍ତୀ ପର୍ଯ୍ୟାୟରେ ରାଜନୀତିକ କ୍ଷମତା କନ୍ଦଳ, ପରିଶେଷରେ ଦେଶ ବିଭାଜନର 'ଲକ୍ଷ୍ନୌଚୁକ୍ତି' ଅନ୍ୟତମ କାରଣ ହେଲା ।

ସ୍ୱରାଜ ପାର୍ଟି ନେତାମାନେ ବଡ଼ ଚତୁର ନୀତି ଅବଲମ୍ବନକଲେ । ଦେଖିଲେ ବେଙ୍ଗଲ ପ୍ୟାକ୍ଟରେ ଆଉ କାମ ହେବନି, ମୁସଲମାନମାନଙ୍କୁ ମୁହଁ ଦେବା ଅବା ଖୋସାମତ କଲେ ଲୋକେ ଚିଡିବେ । ହିନ୍ଦୁ ମୁସଲମାନ କଳି ଫଳରେ ସ୍ୱରାଜ ଦଳ ଉଭେଇ ଯିବ; ଏଣୁ ସ୍ୱରାଜ ସଂଗଠନ ଚାଲିଲା, ହିନ୍ଦୁ ସଂଗଠନ ବି ଚାଲିଲା, "ଆରେ ଘ ଘ ଆପଣା ବଞ୍ଚା" ନ୍ୟାୟରେ । ସ୍ୱରାଜ ରହିଲେ ତ ଭଲ, ନଚେତ ଶେଷକୁ ହିନ୍ଦୁ ସଭାଟାକୁ ଧରିବାକୁ ପଡିବ । ଯେମିତି ହେଲେ ଦେଶସେବା ନାଁରେ ଜାତି ସେବା, ଆତ୍ମସେବା ଦରକାର । ନିଜର ମାନ, ଇଜ୍ଜତ, କ୍ଷମତା, ଯେଉଁ ଉପାୟରେ ବଜାୟ ରହିବ; ତାହା ନେତାଏ କଲେ । ଜିଲ୍ଲାବୋର୍ଡ, କାଉନ୍‌ସିଲକୁ ଯିବାକୁ ହେଲେ ସ୍ୱଭାବ ଚରିତ୍ର, ଠାଣିମାଣି ବଳାଇବାକୁ ହେଲା । ଏଦିଗରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପାର୍ଥୀମାନେ ଅଧିକ ଯତ୍ନଶୀଳ ହେଲେ ।

କୁଣ୍ଡାଇ ଜାଣିଲେ ମଥା ସୁନ୍ଦର, ସୁଆଁରି ଜାଣିଲେ କଥା ସୁନ୍ଦର-ଏ କଥାଟି ଅସହଯୋଗୀଙ୍କ ଠାରୁ କେହି ଅଧିକ ଜାଣିନଥିଲେ; ବିଶେଷକରି ଅସହଯୋଗୀ ରାଜନେତାଙ୍କ ଠାରୁ । ତୁଣ୍ଡରେ, କଥାରେ ସିନା ଅସହଯୋଗୀ; କିନ୍ତୁ କଥା କହିବାରେ ସେମାନେ ବେଶ୍ ନିପୁଣ, ମଣିଷ ମନକୁ ଭୁଲେଇବା ତାଙ୍କର ପ୍ରଥମ କାମ । ଏହା ଏକପ୍ରକାର କଳା, ଏ କଳାଟା ସେମାନେ ଅଭ୍ୟାସ କରନ୍ତି; କଥା କହୁଁ କହୁଁ ଘଡି ଘଡିକେ କାନ୍ଦି ପକାନ୍ତି, ହସି ପକାନ୍ତି, ବୋବାଳି ପାରନ୍ତି; ହାତ, ମୁହଁ, କାନ, ଦାଢ଼ି ଆଦି ଅତି ସୂକ୍ଷ୍ମଭାବରେ ଅବଲମ୍ବ କରି ଲୋକ ଭୁଲେଇ ପାରନ୍ତି । ଏ କଳାକୁ ଛାତ୍ର ସତ୍ୟାଗ୍ରହୀଟି ଅଭ୍ୟାସ କରିନେଇଛି । ଆଶା ରଖିଛି ସେ ଗୋଟାଏ କ'ଣ ହବ । ନିଜର ଅନୁଭବ, ଅଭ୍ୟାସ, ରାଜନୀତିକ ନେତାଙ୍କ ସ୍ୱଭାବ ଚରିତ୍ରକୁ ଏକାଠି କରି, ନେତା ହେବାର ବିଶେଷ ବିଶେଷ ଗୁଣ କ'ଣ ତାହା ସେ କହିଛି, "ଅପରକୁ ଯେଉଁମାନେ ଭୁଲାଇ ଦେବାରେ ପାରଦର୍ଶୀ, ସେମାନେ ନେତା । ଭିତରେ ମାରପେଞ୍ଚ, ଆଉ ଉପରକୁ ସାରଲ୍ୟ ନଥିଲେ ପୁଣି ନେତା କିପରି ? ଏହି ପଦାର୍ଥର ଭଲ ନାମ ଡିପ୍ଲୋମାସି- ଯେଉଁଟାକି ନେତା ହେବାର ପ୍ରଧାନ ଗୁଣ । ଅତି ବୋକା, ସିଧା ସରପଟ ହେବ, ଯାହାକୁ ଦେଖିବ- ପିଲାଭଳିଆ ସରଳ ତରଳ, ତାକୁହିଁ ଜାଣିବ ନେତା । ଏମିତି ଦିନେ ଯେ ମୁଁ ଗୋଟିଏ ଲିଡର ହେବି, ଏଥିରେ ସନ୍ଦେହ ନାହିଁ । ସେତେ ଦିନଯାଏଁ ବଞ୍ଚିରହିଲେ ହୁଏ; ଏ କାରବାରଟା ବଞ୍ଚାଇ ରଖିଲେ ହୁଏ" ।

ଦଳବଦଳା ନେତାଙ୍କର ଗୋଟେ ବିଶେଷ ଗୁଣ; ଯେଉଁ ଦଳକୁ ଲୋକେ ଭିଡ଼ିବେ, ସେଦଳକୁ ଅସହଯୋଗୀଏ ମୁହାଁଇଲେ । ଗାନ୍ଧିଙ୍କ ପ୍ରତାପ ଯେତେବେଳେ ପ୍ରବଳ, ସେତେବେଳେ ସେମାନେ ନନ୍ କୋଅପରେଟର୍, ଯେତେବେଳେ ଚିତ୍ତରଞ୍ଜନ ଦାସଙ୍କ ଦାଉ ବଢ଼ିଲା, ସେତେବେଳେ ସ୍ୱରାଜୀ, ଯେତେବେଳେ ମାଲବ୍ୟ ବା ଲାଲାଜି ମାଡି ମାଡି ଆସିଲେ, ସେମାନେ ଉଠି ଉଠି ହୋଇ ଆସିଲେ ସ୍ୱାଧୀନ ।" କିନ୍ତୁ ଦଳବଦଳର କାଦୁଅ ଛିଟା ତାଙ୍କ ଦେହରେ ଲାଗେନି । ସବୁବେଳେ ସଫାସୁତୁରା ଝାଡି ଝୁଡିଦେଲେ । ଏପ୍ରକାର ମାନସିକତା ପ୍ରାକ୍ ସ୍ୱାଧୀନତା କାଳରେ ସୃଷ୍ଟି ହୋଇଥିଲା । ସ୍ୱାଧୀନତା ପରେ ମଧ୍ୟ ଦେଶରେ ଅନେକତ୍ର ଏ ଲକ୍ଷଣ । ଏହା ଦେଶ ପ୍ରେମର ବାଧକ- ଏକଥା ଲକ୍ଷ୍ମୀକାନ୍ତ ମହାପାତ୍ର ଅସହଯୋଗ ଆନ୍ଦୋଳନ ସମୟରୁ ହିଁ ଆକଳନ କରି ନେଇଥିଲେ ।

(୮)

ବାଘ ଥରେ ମଣିଷ ରକତ ଖାଇଲେ ଜୀବନ ମୂରୁଛା ହୋଇ ମଣିଷ ଶିକାର ଖୋଜିବୁଲେ । ଅନୁରୂପ ଭାବେ କ୍ଷମତା ଥରେ ହାତକୁ ଆସିଗଲେ, ଏଣିକି ଜୀବନାଟା ସାରା କ୍ଷମତା ନିଶା । ଅଧିକରୁ ଅଧିକ ପାଇଁ କ୍ଷମତାଧାରୀମାନେ ଯୋଜନାରେ ଲାଗିପଡ଼ନ୍ତି । ଏଇ କଥାଟି ସ୍ୱାଧୀନତାପୂର୍ବରୁ ପରିଲକ୍ଷିତ ହେଲା; ବିଶେଷକରି ରାଜନୀତି କ୍ଷେତ୍ରରେ । ଏକଦା ଗାନ୍ଧିମନ୍ତ୍ରରେ ଦୀକ୍ଷିତ ସତ୍ୟାଗ୍ରହୀମାନେ କ୍ଷମତା କଥା ଚିନ୍ତା ବି କରିନଥିଲେ; କିନ୍ତୁ ଅସହଯୋଗ ଆନ୍ଦୋଳନ ପ୍ରତ୍ୟାହୃତ ହେବା ପରେ ଅନେକ ଅସହଯୋଗୀ କ୍ଷମତା ହାସଲପାଇଁ ଏକପ୍ରକାର ପାଗଳ ହୋଇଗଲେ । ଏ କଥାଟି ପରିଦୃଷ୍ଟ ହେଲା ସ୍ୱରାଜପାର୍ଟିବାଲାଙ୍କ ଠାରେ । ଜିଲ୍ଲାବୋର୍ଡ କ୍ଷମତା ତ ହାତକୁ ଆସିଗଲା । ଏଣିକି କାଉନ୍‌ସିଲକୁ ଯିବାକୁ ହେବ । ଏଥିପାଇଁ ଚାଲିଲା ବ୍ୟାପକ ପ୍ରସ୍ତୁତି । ମଣ୍ଟ ଫୋର୍ଡ ପ୍ରଥାନୁଯାୟୀ ଏଥରକୁ ମିଶାଇ କାଉନ୍‌ସିଲ ନିର୍ବାଚନ ହେବ ତିନିଥର । ପ୍ରଥମଥର ନିର୍ବାଚନ ବେଳେ ସ୍ୱରାଜ ପାର୍ଟି ଗଠନ ହୋଇନଥିଲା । ପୁନଶ୍ଚ ଦ୍ୱିତୀୟ ଥର ବେଳକୁ ଅସହଯୋଗୀମାନେ ଥିଲେ ପୂରା ଦୋସ୍ତରୁ ଗାନ୍ଧିବାଲା । ସେମାନେ କାଉନ୍‌ସିଲ, ଫାଉନ୍‌ସିଲକୁ ଘୃଣା ଚକ୍ଷୁରେ ଦେଖୁଥିଲେ; ସରକାର ହାଉଆ ସ୍ପର୍ଶ କରିବାକୁ ରାଜି ନଥିଲେ । ଇଂରେଜ ସରକାର ତାଙ୍କ ପାଇଁଥିଲା ଏକପ୍ରକାର ଅସ୍ପୃଶ୍ୟ । ସେମାନଙ୍କର ପଣ, ପ୍ରତିଜ୍ଞା; ସ୍ୱରାଜ ନହେବା ଯାଏ ଏ ପ୍ରାଣ ଭାରତମାତାଙ୍କ ପାଇଁ । ଏବେ ଗାନ୍ଧିଙ୍କ ଆଦର୍ଶ ତା ବାଟରେ; ଅସହଯୋଗୀମାନେ କ୍ଷମତାପାଇଁ ସ୍ୱରାଜପାର୍ଟିରେ । କେହି କେହି ଏମାନଙ୍କୁ ସନ୍ଦେହ ଆଖିରେ ଦେଖିଲେ,ସେମାନଙ୍କୁ ବୁଝାଇ ଦିଆଗଲା ନାନା ବାଗରେ । ଗାନ୍ଧି ତ ସ୍ୱରାଜ ଦାବି କଲେ; ଚିତ୍ତରଞ୍ଜନଙ୍କ ସ୍ୱରାଜପାର୍ଟି କ'ଣ ସେହି ଦାବି କରୁନି ? ଏହା ଥିଲା ଆନକୁ ଭୁଲେଇବାର କୌଶଳ । ଇଂରେଜମାନେ ମଧ୍ୟ ଭାରତୀୟଙ୍କୁ କିଛି କିଛି କ୍ଷମତାଦେଇ ତାଙ୍କ ମୁହଁ ବନ୍ଦ କରିଦେବାର ବାଟ ପରିଷ୍କାର କରିଦେଲେ । ଏକଥାଟି ଅନ୍ୟ ପାଞ୍ଚଜଣଙ୍କ ପରି ଦେଶଭକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର ଜାଣି ଯାଇଥିଲେ । ଅସହଯୋଗୀଙ୍କ କ୍ଷମତାମୋହ ପରୋକ୍ଷରେ ସ୍ୱାଧୀନତା ପ୍ରାପ୍ତିକୁ ଆହୁରି କିଛି ବର୍ଷ ବିଳମ୍ବିତ କଲା । ଗୋଟେ ପଟେ ଗାନ୍ଧି- ଆଦର୍ଶର ହତ୍ୟା; ଆରପଟେ କ୍ଷମତାର ଅପବ୍ୟବହାର-ଅହସଯୋଗୀଙ୍କ ଏତାଦୃଶ ସ୍ଖଳନକୁ ଦେଖାଇଦେଲେ ଲକ୍ଷ୍ମୀକାନ୍ତ ଆପଣାର ଅମରକୃତି 'ଅସହଯୋଗୀର ଆତ୍ମକଥା'ରେ ।

ଦୁଇଟି ନିର୍ବାଚନ ହାତଛଡା ହୋଇଗଲା; ଅସହଯୋଗରେ ମାତି ବା କି ମୁନାଫା ହେଲା ? ଏବେ ଖାଲି ପଶ୍ଚାତାପ, ସ୍ୱରାଜ ଘନ୍ଦା ପାଇଁ ହାତ ପତେଇ ପତେଇ ଦିନ ଗଲା । ଏଇ କଥାଟା ସେତେବେଳେ ହୋଇଥାନ୍ତା କି ? ଏହା ଚିନ୍ତାକରି ଛାତ୍ର-ଅସହଯୋଗୀଟି କହେ, "ସେତେବେଳେ ଯଦି ଆମ୍ଭେ ଟିକିଏ ଆଗବୁଦ୍ଧିଆ ହୋଇ ପାରିଥାଆନ୍ତୁ; କିମ୍ବା ନିଜ ବଳ ଉପରେ ସେପରି ବିଶ୍ୱାସ କରିପାରିଥାନ୍ତୁ, ତେବେ ଓଡ଼ିଶାରୁ କ'ଣ ଜଣେ ହେଲେ ଅଦଳିଆ ଲୋକ କାଉନ୍‌ସିଲ୍‌କୁ ଯାଇ ପାରିନଥାନ୍ତା ! ଆମର ସେ ବହୁତ ଅଦୂରଦର୍ଶିତାର ଫଳ ।" ଗତ ନିର୍ବାଚନରେ ବଙ୍ଗଦେଶରେ କେତେ ରଙ୍ଗ ନାଟ ହୋଇଗଲା । କିନ୍ତୁ ସ୍ୱରାଜଦଳ ବାଲା ଦାନ୍ତନିକୁଟି କାମୁଡି ହୋଇ ରହିଲେ । ତାଙ୍କୁ କେହି ଅଖା ଛ'ପଟରେ ପରଘିଲେନି । ଏଥର ରଣ ପୂର୍ବରୁ ସମସ୍ତ ଅସ୍ତ୍ର ଧାରୁଆ କରିବାକୁ ହେବ । ଉପାୟମାନ ତିଆରି କରାହେଲା; କୌଶଳ ତାହାକୁ କୁହାଯାଏ ରଣ କୌଶଳ । ବେଳହୁଁ ମାତିଗଲେ ଯୁବକର୍ମୀ ମାନେ । ଗ୍ରାମେ ଗ୍ରାମେ, ନଗରେ ନଗରେ, ପଲ୍ଲୀ ପଲ୍ଲୀ କରି ଯେ ଯେଉଁଠି ତାଙ୍କ ଜାତିଆ ଥିଲେ, ସବୁଆଡେ ଗଣ୍ଡି ଫେରିଗଲା । ସାଜ ସାଜ ରଣବାଦ୍ୟ ବାଜିଲା, ପୁଣି ସେମିତି ଘଉଳ ଘନ୍ଦା, ଶିଖା ବୁଝା, ସ୍ୱନାମୀ ବେନାମୀ, ଛପା କାଗଜ ବଣ୍ଟା । ଖବର କାଗଜରେ ଚିତ୍କାର-ଏସବୁ ଘଲିଲା ପୂରାଦମ୍‌ରେ । ଏହା ପଛରେ ଗୋଟେ ହୀନ ଉଦ୍ଦେଶ୍ୟ ଲୁକ୍‌କାୟିତ ଥିଲା । କ୍ଷମତାରେ ଥିବା ପାର୍ଟି ଲାଗିପଡିଲା, ଯେମିତି ଓଡ଼ିଶାରୁ କେହି ବେ-ଦଳିଆ କାଉନ୍‌ସିଲକୁ ନଯାନ୍ତୁ ।

ଅସହଯୋଗୀମାନେ ବାରମାସୀ ଚଢ଼େଇପରି ଘଡିକି ଘଡି ରଙ୍ଗ ବଦଳେଇଲେ । ଆଜି ଗୋଟେ କଥାତ, କାଲି ଆଉଗୋଟେ କୌଶଳ-ଏମିତି କେତେ କ'ଣ କୂଟନୀତି ଘଲିଲା । କଥାରେ ତାଙ୍କୁ ବା କିଏ ଟପିଯିବ ? କେହି କେହି ସେମାନଙ୍କ ମତିଗତିକୁ ନାପସନ୍ଦ କଲେ ଚୁମ୍ବକରେ କହିଦିଅନ୍ତି, "ଆରେ ତମେ ବୁଝୁଛ କ'ଣ ? ବାହାରେ ଥାଇ ସରକାରଙ୍କ ଜବରଦସ୍ତ କଳକୁ ଭାଙ୍ଗିବା ସହଜ ନୁହେଁ । ସେଇଥି ପାଇଁ ଗାନ୍ଧି ଫେଲ୍ ହୋଇଗଲେ । ଆମେ ଏବେ ସେଇ ଇସ୍ପାତ କଳ ମଧ୍ୟରେ ଏମିତି ମୋଡା ମୋଡିବୁଁ ଯେ, ଅଳ୍ପ ସମୟରେ ଓ ଅଳ୍ପ ଆୟାସରେ ସେକଳଟା ଭାଙ୍ଗି ଚୂରମାର ହୋଇଯିବ । ଆଉ ପୁଣି ସଇତାନ ସରକାରର ସାଧ ରହିବ ନାହିଁ ତାକୁ ଆମ ଦାଉରୁ ରକ୍ଷା କରିବାକୁ ।" ଥୋକେ ଏ କଥାରେ ଭଳି ଗଲେ । କେତେକଙ୍କ ଚିନ୍ତା ବଢିଲା । ଯାହା ଗାନ୍ଧି ପାରିଲେନି,

କେତେଜଣ ସ୍ୱରାଜ ନେତା ନିର୍ବାଚିତ ହୋଇଗଲେ କ'ଣ ତାହା ସମ୍ଭବ କରି ପାରିବେ ? ଦେଖାଯାଉ ସମୟ କହିବ, ସତ ମିଛ ନିଶ୍ଚୟ ବାରିହୋଇପଡିବ । ଜନସାଧାଣ ଏମିତି କେତେ କ'ଣ ଭାବିଲେ; ତେଣେ ସ୍ୱରାଜୀଙ୍କ ନିର୍ବାଚନ ଗୋଟିଚ୍ଛଳନା; ଗତ ଥର ନ ହେଲା ନାହିଁ; ଏଥର ଦରକାର ଦଳର ବଡ଼ ବିଜୟ ।

ରାଜନୀତି ଏକ ବିଚିତ୍ର ଖେଳ । ଏଠି ପ୍ରାର୍ଥୀ, ବ୍ୟକ୍ତିତ୍ୱ, ଶିକ୍ଷା, ନୀତି, ନୈତିକତା ସବୁ ଗୌଣ । ପତିଆରା ଥିବା ଦଳ, ଟାଣୁଆ ଦଳପତି–ଏ ଦୁଇଟି ନିର୍ବାଚନ ବୈତରଣୀ ପାରିହେବାରେ ମୁଖ୍ୟ ଭୂମିକା ଥାଏ । ତାହା ନହେଲେ ଯେତେ ଟାଣୁଆ ପାର୍ଥୀହେଲେ ମଧ୍ଯ ତାଙ୍କ କପାଳରେ ପରାଜୟଟା ଅନେକ ସମୟରେ ଲେଖାହୋଇଯାଏ । ସେଇ କଥାକୁ ଯୁବ ଅସହଯୋଗୀଟି କହେ, "ଆମେ ଏଠି କଂସର ନୀତି ଅବଲମ୍ବନ କରୁଁ । କଂସାସୁର ହେଲେ ଏକା ଗୋଟାଏ ପଲିଟିସିଆନ୍ ଥିଲା । ଆମେ ଧଇଲୁଁ କି, 'ମୂଳୁ ମାଇଲେ ଯିବ ଶଳ" । ଭବିଷ୍ୟତରେ କିଏ ତା'ର ଶତ୍ରୁ ହେବ ବୋଲି କଂସ ରାଜ୍ୟଯାକ ଶେଯ ପିଲାଙ୍କ ତଣ୍ଟି ଚିପିବା ଆରମ୍ଭ କରିଦେଇଥିଲା, ଆମ୍ଭେ ସେମିତି ଓଡ଼ିଶାଟାଯାକ ଯେତେକ ସମ୍ଭାବ୍ୟ ପ୍ରାର୍ଥୀଙ୍କୁ ନାନା ଉପାୟରେ ବାଟ ବନ୍ଦ କରିବାକୁ ଲାଗିଲୁଁ ।" ଯାହାକୁ ଯେଉଁ ମନ୍ତ କାଟିବ ତାହା ପ୍ରଯୋଗ କରାଗଲା । କାହାକୁ ବଦନାମ କରାଇ ଦେବାପାଇଁ ତା ନାମରେ କୁତ୍ସିତ ପତ୍ର ପ୍ରକାଶ କରାଗଲା । କାହାକୁ ତା' ବଂଧୁବାନ୍ଧବଙ୍କ ଦ୍ୱାରା ନିବର୍ତ୍ତାଇବାକୁ ଚେଷ୍ଟା କରାଗଲା । କାହାକୁ ଅନ୍ୟପ୍ରକାର ଲୋଭ ଦେଖାଗଲା । ଏସବୁ ରାଜନୀତିର ଗୋଟେ ଗୋଟେ ବିଶେଷ ଅଙ୍ଗ । ରାଜନୀତିରେ ଏସବୁ ଚଳେ । ସେତେକ ଲିବର୍ଟି ନଥିଲେ ରାଜନୈତିକେ ହାତ ଗୋଡ ବନ୍ଧାହୋଇ ପଡ଼ିଥାନ୍ତେ । ମୂଳରୁ ଶତ୍ରୁ ନିପାତ କଲେ ସିନା ନିଷ୍କଣ୍ଟକ ରାଜ୍ୟ ଭୋଗ ହେବ । ଏ କଥାଟି ସ୍ୱରାଜ ପାର୍ଟି ବାଲାଙ୍କୁ ଭଲ ଭାବରେ ଜଣାଥିଲା ।

ମନ୍ଦ ଉଦ୍ଦେଶ୍ୟ, ନୀତି ବିହୀନ ରଜନୀତିରୁ ଅନେକ ସମୟରେ ବିଷମ ଫଳ ମିଳେ । ତାହାହିଁ ଘଟିଲା ସ୍ୱରାଜପାର୍ଟି ଭାଗ୍ୟରେ । ଉପର୍ଯ୍ୟୁକ୍ତ କୌଶଳମାନ ସବୁଠାରେ କାମ କଲାନି । ଅନେକ ନିର୍ଦ୍ଦଳୀୟ ଟାଣୁଆ ନେତା ମୁଣ୍ଡ ଟେକିଲେ । ତାଙ୍କୁ ଆୟତ୍ତ ନକଲେ ଭବିଷ୍ୟତ ଅନ୍ଧାର । ସେଇଭଳି ଅନେକଙ୍କୁ ସାକୁଲା ସାକୁଲି କରି ଦଳ ଭିତରକୁ ଆଣିବାକୁ ଚେଷ୍ଟା ଚାଲିଲା । ବହୁ ସଦାଚାରୀ ନେତାଏ ସ୍ୱରାଜପାର୍ଟିର ମଧୁର କଥାରେ

ଭଳିଗଲେ, ତାଙ୍କ ମଧ୍ୟରୁ କେତେକ ଏହି ଦଳକୁ ଚାଲି ଆସିଲେ । ସେମାନଙ୍କୁ ନେଇ ଦଳର ପୁଷ୍ଟି ସାଧନ ନୁହେଁ; ବରଂ ପାଖକୁ ଆଣି, କାମ ହାସଲପରେ ଧକ୍କା ଦେଇ ବିଦା କରିଦେବାର ଫନ୍ଦି । ଏଇ କଥାକୁ ଛାତ୍ର ଅସହଯୋଗୀଟି ତା'ଢ଼ଙ୍ଗରେ କହେ, "ବୁଝିଲେ ନାହିଁ କି, ଆମେ ହେଲୁ ବିଲୁଆଦଳ । ଆମ ଭିତରେ ଗୋଟିଏ ଡାହାଳ କୁକୁର ପୂରାଇବା ଆମେ କେବେ ଇଚ୍ଛା କରୁନା- କିମ୍ବା ସେଥିରେ ଆମର ମଙ୍ଗଳ ନାହିଁ । ସେଇଥିପାଇଁ କାଳେ କେତେବେଳେ ଗୋଟାଏ କିଏ ସେହିପରି ଆସିଯିବ ବୋଲି ଆମ ଦଳର ମୁହଁ ସର୍ବସାଧାରଣଙ୍କୁ "ପ୍ରବେଶ ନିଷେଧ" । ଯାହା କରିବୁ ଆମେ, ଯାହା ହେବ ଆମ ଭିତରେ । ଏ ଲୋକଙ୍କୁ ଆମଦଳରେ ପୂରାଇବାର ଉଦ୍ଦେଶ୍ୟ ଅଛି । ତେବେ କ'ଣ କି- କେବଳ କାର୍ଯ୍ୟ ଶେଷଯାଏ ହାତ ଆଉଁସା କରି ରଖିବୁ, ଆଉ ନାନାପ୍ରକାର ଆଶା ଭରସା ଦେଇ ତାଙ୍କୁ ନିଜର କିଛି ଉଦ୍ୟମ ଓ ଯତ୍ନରୁ ବିରତ କରାଇ ରଖିବୁଁ; ବଖତ୍ ଠଉରାଇ ଧକ୍କା ଦେଇ ପୁଣି ବାହାର କରିଦେବୁଁ । ସେତେବେଳକୁ ନା ଥିବ ସମୟ, ନା ଥିବ ସୁବିଧା- ହାତ ଗୋଡ଼ ଭାଙ୍ଗି ଘରିଆଡୁ ବିବ୍ରତ ହୋଇ ସେ ରହିବେ, ଏହି ଉଦ୍ଦେଶ୍ୟ ।" ସବୁଆଡୁ ଶତ୍ରୁନାଶ କରିବା କଳାରେ ସ୍ୱରାଜପାର୍ଟିବାଲା ଭାରି ଧୁରନ୍ଧର । ତଥାପି କେହି କେହି ଫାଶରେ ନପଡି ଉତୁରି ଯାଆନ୍ତି । ଏଣିକି ଭୋଟର ଭାଇ ଭଉଣୀ ହିଁ ସାହା, ଭରସା । ସେମାନଙ୍କ ଉପରେ ହାରଜିତ ନିର୍ଭର କରେ । ଏଣେ ଦଳର ମୁଖିଆମାନେ କିଏ କେଉଁଠି ଠିଆହେବେ ତାହା ନିର୍ଣ୍ଣୟ କରିବାକୁ ହୁଏ । ତା'ର ସମାଧାନ ସେହି ଗୁରୁ ଘର ପାଠ, ଯେତେ ପଢ଼ିଲେ କି ଶେଷ ହୁଏ ?

ଅସହଯୋଗୀମାନଙ୍କ ମଧ୍ୟରୁ ଯେଉଁମାନେ ଆଗ ଧାଡ଼ିରେ ବା ମୁଖିଆ, ସେମାନେ ଟିକଟ ତ ନିଶ୍ଚୟ ପାଇବେ । କେହି ମୁହଁ ଖୋଲନ୍ତିନି, ନିଜ କଥା ମୁହଁରେ କହିଲେ ସେ ପୁଣି କି ମୁଖିଆ ? ସବୁ ଆଶାୟୀ ପ୍ରାର୍ଥୀଙ୍କ ଗୋଟିଏ କଥା; ଶୁଆ ପଢ଼ିଲା ପାଠ, "ମୁଁ ଗଲେ ଏଣେ ଦେଶରେ କର୍ମ ବିଗିଡି ଯିବ," ଭିତରେ ଭିତରେ କିନ୍ତୁ ନିଜ ନିଜ ଅନୁସରଣିଆଙ୍କୁ ଲଗାଇ ଦିଅନ୍ତି । ସେମାନେ ଜିଦ୍ କରନ୍ତି, " ଆପଣ ନଗଲେ ତ ଚଳିବ ନାହିଁ"- ଶେଷରେ ସେହି ଆପଣମାନେ ଅତି କଷ୍ଟରେ ସ୍ୱାର୍ଥ ତ୍ୟାଗକରି, ବନ୍ଧୁ ବର୍ଗମାନଙ୍କର ଓ ଦେଶବାସୀଙ୍କର ଏକାନ୍ତ ଅନୁରୋଧରେ ବାଧ ହୋଇ ଯିବାକୁ ମଙ୍ଗନ୍ତି । ମାତ୍ର ମଙ୍ଗିବା ସରିକି ମଙ୍ଗିଲେ ଅନେକ- ଯେତେ ଆସନ ଅଛି ତା'ର ଦୁଇଗୁଣ, ଚାରିଗୁଣ । ଯାହାଙ୍କ ଇଚ୍ଛା ଅଛି, ଅଥଚ କେହି ତାଙ୍କ ନାଁ କହିଲେନି, ସେମାନେ ମନ ଊଣା କଲେ । ସମାଧାନ

ପାଇଁ ସଭା ବସିଲା, ଘନ ଘନ ଗୁପ୍ତ ମନ୍ତ୍ରଣା । ଅଧିବେଶନ ମାନ ଆରମ୍ଭ ହେଲା । ଅନେକ କୁସ୍ତାକୁସ୍ତି, ପାଟି ତୁଣ୍ଡ, ଶେଷରେ ବଡ ଆପଣମାନେ ଯାହା ବିଳି ବିଳେଇଲେ ତାହା ମାନିବାକୁ ବାଧ । ନଚେତ୍ ଦଳରୁ ବିତାଡିତ । କାନମୁଣ୍ଡ ଆଉଁସି ଅନେକ ପଡିରହିଲେ, ଏଥର ନହେଲା ନାହିଁ ଆରଥରକୁ ଚେଷ୍ଟା କରାଯିବ । ଆଉ ଦଳେ ଅସନ୍ତୁଷ୍ଟ ଗୋଷ୍ଠୀ ଭିତରେ ଭିତରେ ଚେରକାଟିଲେ । ରାଜନେତାଙ୍କ ଏପ୍ରକାର ମାନସିକତା ସମ୍ବନ୍ଧରେ ଲକ୍ଷ୍ମୀକାନ୍ତ କହନ୍ତି, "ଆମେ ସିନା ଅସହଯୋଗୀ ହୋଇଛୁଁ, ତା ବୋଲି ଆମର ଜାତୀୟ ଗୁଣଟା ତ ଛାଡି ପାରିନାହୁଁ । ଆମଭିତରେ ଓଡ଼ିଆ, ବଙ୍ଗାଳୀ, ପୁରୀଆ, ବାଲେଶ୍ୱରିଆ, ବ୍ରାହ୍ମଣ କରଣ ପ୍ରଭୃତି ଯେଉଁସବୁ ବାରଣ ବା ପଲିଟିକାଲ ୱାର ଅଛି, ତାହାକୁ ତ ଉଠାଇ ଦେବା ସହଜ ନୁହେଁ; ଅସହଯୋଗଟା ତ ଚିରଦିନ ରହିବ ନାହିଁ ବା ନଥିଲା; କିନ୍ତୁ ଆମଭିତରେ କାମୁଡା, କାମୁଡିଟା ଯେ ବଂଶ ପରଂପରାଗତ, ଏହାକୁ ଛାଡିଲେ କ'ଣ ଘେନି ରହିବୁଁ?" ଏ ତ ଟିକଟ ବଣ୍ଟାବଣ୍ଟିର ରହସ୍ୟ, ଏଣିକି ନିର୍ବାଚନ ମଇଦାନରେ ତାକତ୍ ଖଟେଇ ଲଢ଼ିବାକୁ ପଡିବ, ନଚେତ୍ କ୍ଷମତା ହାତରୁ ଚାଲିଯିବ ।

ଜିଲ୍ଲାବୋର୍ଡ ଗୁଡାକ ସ୍ୱରାଜପାର୍ଟି ହାତରେ ଥିଲା । ତାଙ୍କ କମରରେ ବହୁତ ବଳ । ଦଳରେ ମଧ୍ୟ ଅନେକ କର୍ମୀ, ଅନେକ ମର୍ମୀ, ଅନେକ ଧର୍ମୀ । କ୍ଷମତା ଗଲେ ଏ ପଙ୍ଗପାଳ ଦଳସବୁ ଚାଲିଯିବେ । ଜୀବନ-ଝଗଡା କରି ଜିଲ୍ଲା ବୋର୍ଡକୁ ହାତ ଛଡା କରିବାର ନାହିଁ । ଅସୁରୁଣୀ ବୁଢ଼ୀର "ଆୟୁଷବାଳ" କେରାଏ ପରି କ୍ଷମତା ହାତରୁଗଲେ କିଏ ବା କାହାକୁ ପଚାରିବ ! ରାଜନୀତି କ୍ଷେତ୍ରରେ ଏଇଟା ହିଁ ଧ୍ରୁବସତ୍ୟ । ପ୍ରାକ୍‌ସ୍ୱାଧୀନତା କାଳରେ ବହୁ ଅସହଯୋଗୀଙ୍କ କ୍ଷମତା ମୋହ ଥିଲା । ସଂପ୍ରତି ସେଇ ମୋହଟା କ୍ରମେ କାୟା ବିସ୍ତାର କରିଚାଲିଛି । ନୂଆନୂଆ କ୍ଷମତା ପାଇ ଅସହଯୋଗୀମାନେ ବାଟବଣାହେଲେ; ଏବେତ ଦେଶ ବହୁ ଆଗରେ । ଦେଶ ସେବା ନହୋଇ ଆତ୍ମସେବା ଚାଲିଲେ, କେଉଁ ସତ ମଣିଷ ବା ଶାନ୍ତିପାଇବ ?

(୯)

ପଲାସୀ ଯୁଦ୍ଧ (୧୭୫୭), ଅସହଯୋଗ ଆନ୍ଦୋଳନ (୧୯୨୦-୨୧)- ଏ ଦୁଇଟି ଐତିହାସିକ ଘଟଣା ଅତୀବ ଗୁରୁତ୍ୱପୂର୍ଣ୍ଣ । ପ୍ରଥମଟିର ଫଳାଫଳ ଭାରତରେ ଇଂରେଜମାନଙ୍କ ନୌବାଣିଜ୍ୟ ତଥା ସାମ୍ରାଜ୍ୟ ବିସ୍ତାର ଭବିଷ୍ୟତକୁ ଉଜ୍ଜ୍ୱଳ କଲା; ଦ୍ୱିତୀୟଟିର ସୁଦୂର ପ୍ରସାରୀ ପ୍ରଭାବ ପଡିଲା; ଭାରତରେ ସେମାନଙ୍କ ଏକଛତ୍ର ଶାସନକୁ

ବିଚଳିତ କରିଦେଲା । ଶତାବ୍ଦୀ ଶତାବ୍ଦୀଧରି ଯେଉଁ ବିଦେଶୀ ଜାତିଟା ଭାରତଭଳି ବୀର ପ୍ରସବିନୀ ଦେଶ ମାତୃକାକୁ ଆପଣାର ପୈତୃକ ସଂପତ୍ତି ଧରିନେଇଥିଲେ, ଅସହଯୋଗ ଆନ୍ଦୋଳନ ହେତୁ ସେମାନଙ୍କର ମାନସିକତାରେ ଶକ୍ତ ଆଘାତ ଲାଗିଲା । ଯଦିଓ ପୂର୍ବରୁ ମୁକ୍ତି ସଂଗ୍ରାମ ଧୀର ମନ୍ଥର ଗତିରେ ଆରମ୍ଭ ହେଇଥିଲା; ଅସହଯୋଗ ଆନ୍ଦୋଳନ ଭଳି ଏକ ସର୍ବଭାରତୀୟ ସ୍ତରର ମୁକ୍ତି ଯୁଦ୍ଧର ସୂତ୍ରପାତ ହିଁ ମହାତ୍ମାଜୀ କରିପାରିଥିଲେ । ଏହି ଆନ୍ଦୋଳନରେ ମୁକ୍ତି ସେନାନୀଙ୍କର ଉତ୍ସାହ, ତ୍ୟାଗ, ଆତ୍ମବଳିକୁ ଦେଖି ପରଖି ବିଦେଶୀ ଶାସକ ଆପଣାର ଦିନଗଣିବାକୁ ଆରମ୍ଭ କଲେ- ଏହା ଏକ ସାର୍ବଜନୀନ ସତ୍ୟ ।

ନଦିଆ ଜିଲ୍ଲାସ୍ଥିତ ମୁର୍ଶିଦାବାଦର ଛତିଶ କିଲୋମିଟର ଦକ୍ଷିଣକୁ ପୁଣ୍ୟତୋୟା ଭାଗୀରଥୀ ତଟରେ ପଲ୍ଲାସୀ ରଣଭୂମି । ଚାଲିଲା ମହାସମର । ଗୋଟେ ପଟେ ବଙ୍ଗର ନବାବ ସିରାଜଉଦ୍ଦୌଲା, ପ୍ରତିପକ୍ଷରେ ରବର୍ଟ କ୍ଲାଇବଙ୍କ ନେତୃତ୍ୱାଧୀନ ଇଂରେଜ ସୈନ୍ୟ । ଯୁଦ୍ଧର କାରଣ ଥିଲା ଅତି ସ୍ପଷ୍ଟ । ଜଣେ ଦୁର୍ବଳ ଶାସକ ହେଲେ ମଧ୍ୟ କଲିକତାରେ ଇଂରେଜମାନଙ୍କ ବେଆଇନ ଦୁର୍ଗ ପ୍ରତିଷ୍ଠାକୁ ଦୃଢ଼ ପ୍ରତିରୋଧ କରିଥିଲେ ସିରାଜ । କ୍ଷୁବ୍ଧ ଇଂରେଜମାନେ ନବାବଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ । ସମର କ୍ଷେତ୍ରରେ ସିରାଜଙ୍କ ସେନାନାୟକ ମୀରଜାଫରଙ୍କ ବିଶ୍ୱାସଘାତକତା ଇଂରେଜମାନଙ୍କୁ ଏକ ସହଜସାଧ୍ୟ ବିଜୟ ଭେଟି ଦେଲା । ଦେଶଦ୍ରୋହୀ, ଜାତିଦ୍ରୋହୀ, କ୍ଷମତାପାଗଳ ମୀରଜାଫର ଯଦି ଦେଶପ୍ରେମୀ ହୋଇଥାନ୍ତେ; ହୁଏତ ଏ ଯୁଦ୍ଧର ପରିଣାମ ଭିନ୍ନ ହୋଇଥାନ୍ତା । ଜଣେ ଭାରତୀୟଙ୍କ ଏଭଳି ଅକ୍ଷମଣୀୟ ଅପରାଧ ଗୋଟେ ଜାତିର ଭାଗ୍ୟରବିକୁ ଅସ୍ତମିତ କରିଦେଲା । ମୀରଜାଫର ହେଲେ ବଙ୍ଗର ନବାବ, ଅତି ଆଦରେ ଟେକିଦେଲେ ଇଂରେଜମାନଙ୍କ ହାତରେ ଚବିଶ ପ୍ରଗଣା ଅଞ୍ଚଳର ଜମିଦାରୀ; ଉପହାର ଦେଲେ ବହୁ ମୂଲ୍ୟର ସୁନାରୁପା । ଚାଲିଲା ଏକଚାଟିଆ ବାଣିଜ୍ୟ କାରବାର ବଣିକ ଇଂରେଜମାନଙ୍କର । ଉତ୍ସାହୀ ଇଂରେଜମାନେ ଅଭିନବ ପନ୍ଥାମାନ ବାଛିନେଲେ । ଯୁଦ୍ଧ, ସନ୍ଧି, ସାମନ୍ତ ସନ୍ଧି ପ୍ରଥା, ରାଜସତ୍ୱ ଲୋପନୀତି–ଏମିତି କୂଟନୀତିମାନ ଆପଣେଇ ନେଲେ । ଓଡ଼ିଶା ଅଧିକାର (୧୮୦୩) ବେଳକୁ ସାରା ଭାରତ ବର୍ଷ ଏକପ୍ରକାର ସେମାନଙ୍କ ହାତ ମୁଠାରେ । ମୀରଜାଫରଙ୍କ କଳଙ୍କିତ ଆଚରଣ ସତ୍ତ୍ୱେ; ଭାରତୀୟମାନେ ସଂଘବଦ୍ଧଭାବେ ଲଢ଼ିଥିଲେ ଇଂରେଜମାନେ ନିଶ୍ଚୟ ପରାଜୟ ସ୍ୱୀକାର କରିଥାନ୍ତେ । ଏକଥାକୁ ସ୍ୱୟଂ ରବର୍ଟ କ୍ଲାଇବ

ସ୍ୱୀକାର କରିଛନ୍ତି । ପଲସୀଯୁଦ୍ଧ କ୍ଷେତ୍ରଠାରୁ ନିରାପଦ ଦୂରତାରେ ନିଜକୁ ରଖି ଶହଶହ ଭାରତୀୟ ଏ ସମରକୁ ଦେଖୁଥିଲେ । ଯଦି ହାତରେ ଖଣ୍ଡେ ଖଣ୍ଡେ ଲାଠିଧରି ଯୁଦ୍ଧକୁ ଲମ୍ଫ ଦେଇଥାନ୍ତେ; ଆଙ୍ଗୁଠି ଗଣତି ଇଂରେଜ ସୈନ୍ୟ ଭୂଲୁଣ୍ଠିତ ହୋଇଥାନ୍ତେ । ଯଦି, କିନ୍ତୁ -ଏ ଶବ୍ଦ ଗୁଡିକ ବାସ୍ତବତାଠାରୁ ବହୁ ଦୂରରେ । ଏକଥା ସତ୍ୟ ଯେ ଶକ୍ତି, ସାମର୍ଥ୍ୟ, ସାହସ, ଭରପୂର ବୀରତ୍ୱ ଥାଇ ମଧ୍ୟ ଭାରତୀୟମାନେ ଏକତାର ଅଭାବରୁ ଅତୀତରେ ବହୁମୂଲ୍ୟ ଦେଇଛନ୍ତି । ଏହାର ମୂକ ସାକ୍ଷୀ ହିଁ ଇତିହାସ ।

ସ୍ୱାର୍ଥାନ୍ଧ ମୀରଜାଫର, ଚରଣ ପଟ୍ଟନାୟକ, ଶିଖୀମନାଇଙ୍କ ଭଳି ଦେଶଦ୍ରୋହୀମାନେ ଜାତୀୟ ହିତର ବାଧକ ହୋଇଛନ୍ତି । ସେମାନଙ୍କ ଭଳି ଶହ ଶହ କ୍ଷମତା ଲିପ୍ସୁ, ଅର୍ଥଲୋଭୀ ସାରା ଭାରତ ବର୍ଷର ଗଳିକନ୍ଦିରେ ଅବାଧ ବିରଚଣ କରନ୍ତି । ଏମାନେ ମୁକ୍ତି ଯୁଦ୍ଧ ସମୟରେ ଥିଲେ; ଏବେ କିଛି କମ୍ ନାହାନ୍ତି । ଫଳତଃ ସଦାଚାରୀ, ଦେଶଭକ୍ତ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଭିତରକୁ ସେଇମାନଙ୍କ ମଧ୍ୟରୁ କେତେକ ପଶି ଆସିଲେ; ଭଣ୍ଡୁର କରିବାକୁ ଲାଗି ପଡିଲେ ମୁକ୍ତି ଯୁଦ୍ଧକୁ । ମନ୍ଲୁ ଖୋଜୁଥିଲା କାକରପାଣି, ବଇଦ କହିଲା ପି ତୋରାଣି । ବିଲେଇ କପାଳକୁ ଶିକା ଛିଣ୍ଡିଲା । ମହାତ୍ମାଜୀ ଅସଯୋଗ ଆନ୍ଦୋଳନ ପ୍ରତ୍ୟାହାର କରିନେଲେ । କ୍ଷମତା ଲୋଭୀମାନେ ବାଛିନେଲେ ସ୍ୱରାଜ-ପାର୍ଟିକୁ । ଏଣିକି ଖାଲି ପଦ ପଦବୀ ନିଶା, ଯେନ ତେନ ପ୍ରକାରେ ହେଉ, ନିର୍ବାଚନରେ ଜିତିବାକୁ ପଡିବ । ଚାଲିଲା ହୀନ ରାଜନୀତି, କୂଟ ଚକ୍ରାନ୍ତ, ପଛରୁ ଛୁରା ଭୁଷା-ଏମିତି କେତେ ପ୍ରକାର ଅପକୌଶଳ । ସେଗୁଡିକର ଏକ ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି ଲକ୍ଷ୍ମୀକାନ୍ତ ମହାପାତ୍ର ।

ସ୍ୱରାଜପାର୍ଟିର ସ୍ୱତନ୍ତ୍ର ନିର୍ବାଚନ କୌଶଳ, ଯିଏ ପାଟିକଲା ତା'ମୁହଁରେ କିଛି ପକାଇ ଦିଆଗଲା । ଯେଉଁମାନେ ଅଡିବସିଲେ; ସେ କଟକିଆ ଅବା ପୁରୀଆ, ତାଙ୍କୁ କିଛି ସିଟ୍ ଛାଡି ଦିଆଗଲା । କେଉଁଠି ଆପୋଷିରେ ନିଷ୍ପତ୍ତି ହେଲା । ଶେଷରେ ପୁରୀଟା ସତ୍ୟବାଦୀଆଙ୍କୁ ଛଡାଯିବା ସହ ଏଣୁ ତେଣୁ ବ୍ରାହ୍ମଣ ଯୋଡେ ଦଳକୁ ନିଆଗଲା । ସମସ୍ତେ ବା କେମିତି ସନ୍ତୁଷ୍ଟ ହୁଅନ୍ତେ ? ଟିକଟ ନପାଇ ଦଳେ ନିରାଶ ହେଲେ, ସେମାନଙ୍କ ବାରଶବର୍ଷର ତପ ଶୁଖୁଆ ପୋଡାରେ ଗଲା ।

ବାଛିବାଛି ପ୍ରାର୍ଥୀ ଚୟନ କରିବାରେ ସ୍ୱରାଜୀମାନେ ଏବେ ଅଭ୍ୟସ୍ତ ହୋଇଗଲେଣି । ଅନୁଭୂତି ମଧ୍ୟ କିଛି କମ୍ ନାହିଁ । ଯେଉଁଠି ଯେଉଁ ବିଦ୍ୟା କାଟିବ ତାହା

ପ୍ରୟୋଗ ହେଲା । କିନ୍ତୁ ଜମିଦାର ନିର୍ବାଚନ ମଣ୍ଡଳୀରେ ସେମାନେ ଥିଲେ ଅତି ଦୁର୍ବଳ । ସେଠି ଲଢ଼ିବାକୁ କେହି ମଙ୍ଗିଲେନି । ଆଗରୁ ନିର୍ବାଚିତ ହେଉଥିବା ଧନୀଜଣକ ବଡ଼ ଧୂର୍ତ୍ତ, ତା ସାଙ୍ଗକୁ ପଇସା ଅଛି । ବଗର ଥଣ୍ଟ ବଢ଼ିଲେ ମୀନକୁ ବିପଦ । ତାଙ୍କୁ ହରେଇବାକୁ ହେବ । ଶେଷରେ ମିଳିଲେ ଗୋଟାଏ "ଗୋ-ବିଗରୀ" ଜମିଦାର ପିଲା । ସେହି ପାର୍ଥୀଙ୍କ ସଂପର୍କରେ ଛାତ୍ର ଅହଯୋଗୀଟି କହେ, "ଆମେ ତାକୁ ଟେକା ଟେକି କରି ସ୍ୱର୍ଗକୁ ଚଢ଼ାଇ ଦେଲୁଁ । ସେ ବି ଯୋଗାଡ ଯନ୍ତକରି ଆମ ହାତରେ ମେଣ୍ଟାଏ ଗେଞ୍ଜିଦେଲେ । ଆମର ଦୁଇପ୍ରକାର ଲାଭ, ଆମେ ଜାଣୁ ତାଙ୍କର ଦଶା କ'ଣ ହେବ । ସ୍ୱାର୍ଥ ସିଦ୍ଧି ପାଇଁ ତାଙ୍କର ମୁଣ୍ଡ କଟାହେଲା । ଆମର ସେଥିରେ କ'ଣ ? ଏତ ରାଜନୀତି । ସାଧାରଣ ଅଶିକ୍ଷିତ ଲୋକେ ସିନା ଆମ କଥାରେ ଭୁଲନ୍ତି । ଜମିଦାର ଗୁଡାକ ବଡ଼ ଅମାନିଆ ଜନ୍ତୁ । କେତେପ୍ରକାର ପ୍ରଲୋଭନ, ଗୁଞ୍ଜା, ଗାଲୁ, ଭୟ ପ୍ରଦର୍ଶନ ପ୍ରଭୃତିରେ କେତେଗୁଡିଏ ଭୋଟ ପାଇଲୁ ସତ୍ୟ; କିନ୍ତୁ ଯାହା ହେବାର ତାହା ହେଲା- ସେ ଜମିଦାର ପିଲାଟି ଫେଲ ହୋଇଗଲା । ଆଉ ଗଲେ ଯେ, ସେ ଆମର ପ୍ରଧାନ ଶତ୍ରୁ ।" ଶତ୍ରୁ ନାଶନ କ୍ରିୟା ସଫଳ ହେଲାନି । ଆଉ ଗୋଟିଏ ନିର୍ବାଚନ ମଣ୍ଡଳୀ । ସେଠିକାର ପ୍ରାର୍ଥୀ ଭାରି ବଡ ଲୋକ, ଦୁଇ ଦୁଇଥର କାଉନ୍‌ସିଲ୍‌କୁ ଗଲେଣି । ତାଙ୍କୁ ହଟାଇବାକୁ ନୂଆ ଉପାୟ ବାହାର କରାଗଲା । ଅନ୍ୟ ଜଣେ ବଡ଼ ଲୋକଙ୍କୁ ତାଙ୍କ ବନ୍ଧୁବାନ୍ଧବଙ୍କ ଜରିଆରେ ଫୁସୁଲାଇ ସେଇ ସ୍ଥାନରେ ଛିଡା କରାଗଲା । ସ୍ୱରାଜ ପକ୍ଷ ଭୋଟ ତ ତାଙ୍କ ପଟରେ, ବିପକ୍ଷ ପ୍ରାର୍ଥୀଙ୍କ ସବୁ ଭୋଟ ବାଣ୍ଟ ହୋଇଗଲା । ଶେଷରେ ସ୍ୱରାଜ ପାର୍ଥୀ ଜିତିଲେ । କୌଶଳ ନଥିଲେ ଏହା କି ସମ୍ଭବ ହୁଅନ୍ତା ! ସ୍ୱରାଜ ପାର୍ଟିର ଅଣ୍ଟା ଭାରି ଦମ୍ଭ । ତାଙ୍କ ନେତାଙ୍କ ଆଣ୍ଠ ଆଗରେ ନେତା ନେତା ମହାର୍ଦ୍ଦ କିମ୍ବା ଝଙ୍କା ଝଙ୍କା ଚିଲିକା ମାଛ କିଛି ଖଟିଲା ନାହିଁ- ସାମାନ୍ୟ କୁହାବୋଲା ଧରାଧରିକୁ ବା ପଚରେ କିଏ !

କ୍ଷମତାଧାରୀ ମାନଙ୍କର ମତି ଗତି, ଚଳିଚଳଣି, କାରନାମାକୁ ଚତୁର ଇଂରେଜ ସରକାର ତନ୍ନ ତନ୍ନ କରି ନିରୀକ୍ଷଣ କରୁଥିଲେ । ସ୍ୱରାଜ ପାର୍ଟିବାଲା ଯାହାଯାହା ଉପାର୍ଜନ କରୁଛନ୍ତି ବା କେଉଁ ଉପାୟରେ କରିଛନ୍ତି ତାହାତ ସମସ୍ତେ ଜାଣନ୍ତି । ତାଙ୍କ ପଛରେ ସରକାରଙ୍କ ପୁଲିସ, ଡିକ୍ଟେଟିଭ, ଏପରି କି କାଉନ୍‌ସିଲରେ ସୁଦ୍ଧା ଡିଟେକ୍‌ଟିଭ । ସରକାର ଯେଉଁ ସଭ୍ୟଜଣକ ମନୋନୀତ କରିବା କଥା ସେ ସଭ୍ୟ ସ୍ୱରାଜ ଦଳରୁ ହେଲେନି । ଏଣେ ଓଡ଼ିଶା ଯାକରେ ଯେଉଁ ଲୋକକୁ ତାଙ୍କର ଭାରି ଡର, ଅର୍ଥାତ୍ ଛକା-ପଂଝା

ଖେଳରେ ତାଙ୍କ ଠୁଁ ବଳି ଯାହାଙ୍କର କଲମ, ଏହିପରି ଜଣେ ବ୍ୟକ୍ତିଙ୍କୁ ବାଛି ପଠାଇଲେ । ତହିଁକି ପୁଣି ସେ ଜମିଦାର ସଭ୍ୟଜଣକ ଆସିଛନ୍ତି । ଏମାନେ ତ ନିଶ୍ଚୟ ସ୍ୱରାଜୀଙ୍କ ବାଟରେ କଣ୍ଟାହେବେ । ସୁନାରେ ସୁହାଗା ଯୋଗ ହୋଇଛି । ଏବେ ପାର୍ଟି କପାଳରେ କ'ଣ ଅଛି କେଜାଣି !

ଅସହଯୋଗୀଙ୍କର କେତେ କେତେ ଆଗପାଞ୍ଚ, କେଉଁଠି ଜିତ୍; ପୁଣି କେଉଁଠି ପରାଜୟ । ଏ ତ ରାଜନୀତି ଖେଳ । ସେମାନେ ଏବେ କ୍ଷମତା ପଛରେ । ଗାନ୍ଧିଜୀଙ୍କ ଡାକରାରେ ହେଉଥିବା ହରତାଳ, ପିକେଟିଂ ଫିକେଟିଂ କଥା ଭୁଲି ଗଲେଣି । ଆପେ ବଞ୍ଚିଲେ ବାପର ନାଁ । ଦେଶ କଥା ତେଣେ ଚୁଲିକି ଗଲାଣି । କିଛି କିଛି କ୍ଷମତା ସିନା ଆସିଗଲା ହାତକୁ, ଜିଲ୍ଲାବୋର୍ଡ ଅବା କାଉନ୍‌ସିଲ ହେଉ । ହାତ ମଧ ତେଲିଆ ହେଲା; କିନ୍ତୁ ପରିସ୍ଥିତି ବଦଳିଗଲା । ଲୋକେ ଅସହଯୋଗୀଙ୍କୁ ଘୃଣା କରିବାକୁ ଲାଗିଲେ, ଜନତାଙ୍କ ଏଭଳି ମାନସିକତା ହେବା ମଧ ସ୍ୱାଭାବିକ । ଏହିକଥାକୁ ନିଃସଙ୍କୋଚରେ ଛାତ୍ର ଅସହଯୋଗୀଟି ସ୍ୱୀକାର କରିଛି, "ଆମେ ଯେତେବେଳେ ଖାଣ୍ଟି ଗାନ୍ଧିବାଲା ନନ୍-କୋଅପରେଟର ଥିଲୁଁ, ସେତେବେଳେ ଲୋକେ ଆମକୁ କେତେ ସ୍ନେହ, ଶ୍ରଦ୍ଧା ଦେଖାଉ ଥିଲେ, ସହାନୁଭୂତି ଦେଖାଉଥିଲେ, ଏବେ କାହିଁକି ବେଜାୟ ଶତ୍ରୁ ଆମର ବଢ଼ିଲେଣି । ସେତେବେଳେ ଯେଉଁଠିକି ଗଲେ ଆମର କୋଟି ଆଦର ହେଉଥିଲା, ସବୁରି ସୁନାପୁଅ ହୋଇଥିଲୁଁ । ଏବେ ଯାହା ଯେଉଁଠି ମିଳୁଛି ସବୁ ଭୟରେ, ଆମ ଭିତର ଇଲ୍ଲତ୍, ଗଲିଜି ଯାହା ଥିଲା, ଏବେ ସବୁ ପଦାରେ ପଡି ଦାଣ୍ଡରେ ଗଡିଲାଣି । ନୈତିକବଳ ନାମରେ ଯେଉଁ ପ୍ରଭାବ ବିସ୍ତାର କରିଥିଲୁଁ; ପ୍ରକୃତ ନୈତିକତା ନଥାଇ ତାହା ଆଉ କେତେ କାଳ ଥାନ୍ତା ?"

କ୍ଷମତା, ଅର୍ଥ ମୋହ ଅନେକ ସମୟରେ ମଣିଷ ପଣିଆକୁ କାଳିମାଗ୍ରସ୍ତ କରେ, ଲାଳସାର କାରାଗାରରେ ମାନବିକତା ବନ୍ଧା ପଡେ । ମୁକ୍ତି ସଂଗ୍ରାମୀଙ୍କ ଠାରୁ ଏ ଦେଶ କେତେ କ'ଣ ଆଶା କରିନଥିଲା ! ଅସହଯୋଗର ଯବନିକା ସୁବର୍ଣ୍ଣ ସୁଯୋଗ ସୃଷ୍ଟିକଲା ମିଛ ସତ୍ୟାଗ୍ରହୀଙ୍କ ପାଇଁ । ଏମାନେ ମା', ମାଟିକୁ ଭୁଲିଲେ, ଇଂରେଜମାନେ ଅନ୍ତତଃ ଆଉ ଆଠବର୍ଷ(ଲବଣ ସତ୍ୟାଗ୍ରହ ପର୍ଯ୍ୟନ୍ତ) ଶାନ୍ତିରେ ନିଶ୍ୱାସ ମାରିଲେ । ପରାଧୀନ ଦେଶରେ ଅନେକଙ୍କ ନୈତିକ ସ୍ଖଳନ ଘଟିଥିଲା । ଏହାର ମୂଳ କାରଣ ଥିଲା କ୍ଷମତା ଲୋଭ । ଗାନ୍ଧିଜୀ ଠିକ୍ ବୁଝିଥିଲେ; ଜାତୀୟ କଂଗ୍ରେସକୁ କ୍ଷମତା ଆଡେ ମନ ନବଳେଇବାକୁ

ଉପଦେଶ ଦେଇଥିଲେ । ତାଙ୍କ କଥାକୁ ବା କିଏ ମାନିଲା ? ଅଧୁନା ସ୍ୱାଧୀନ ଦେଶରେ ଆତ୍ମ-ସ୍ୱାର୍ଥ-ସାଧନର ନିଶା ! ସେଦିନ ଗୋଟିଏ ମୀରଜାଫର ପଲାସୀ ଯୁଦ୍ଧର ଗତି ବଦଳେଇ ଦେଲେ । ଏବେ ତ ଶହ ଶହ ମୀରଜାଫର, ଏମାନେ ଦେଶର ରକତ ଶୋଷନ୍ତି ଓଡଶ ପରି; କେତେ ବାଗରେ ଲୁଟୁଛନ୍ତି । ସେମାନଙ୍କ ନୈତିକ ଚରିତ୍ର ନବଦଳିଲେ ଦେଶର ଭବିଷ୍ୟତ ଯେ କ'ଣ, ତାହା ମାତା ଗଙ୍ଗାଙ୍କୁ ଜଣା । ଆଜି ଯେତେ ଜୟଚନ୍ଦ୍ର, ମୀରଜାଫର, ଶିଖୀମନାଇ, ରାମଚନ୍ଦ୍ର ନିଜାମ, ପାତିଆଳା ସବୁ ଅଛନ୍ତି, ଏମାନେ ସମୂଳେ ନିପାତ ନହେଲେ ଦେଶର ଉନ୍ନତି ଅସମ୍ଭବ । ଏଣୁ ବେଳହୁଁ ସାବଧାନ ହେବା ବିଧେୟ ।

(୧୦)

କପାଳ ଉଣାକୁ ନାଗରା କଣା । ଦିନ ତ କାହାରି ସମାନ ଯାଏନି, ଆଜି ପାଲିଙ୍କି ଉପରେ ପାଟଛତା; କାଲି ବେଡି ଉପରେ କୋରଡା । ଏକଦା ସତ୍ୟାଗ୍ରହୀମାନେ ମୁଠାଏ ଦାନା ଯୋଗାଡ଼ କରି ପାରୁନଥିଲେ, ଯାହା ଯେମିତି ସେଇ ସ୍ୱରାଜ ଚନ୍ଦାରୁ । ଏବେ ସ୍ୱରାଜ ପାର୍ଟିରୁ ଜିଲ୍ଲାବୋର୍ଡ, କାଉନସିଲକୁ କିଛି କିଛି ସଭ୍ୟ ଗଲେଣି । ରୋଜଗାର ମଧ କିଛି କମ୍ ନୁହେଁ, ହଠାତ୍ ଅବସ୍ଥା ସୁଧୁରିଗଲା । ସ୍ୱରାଜୀମାନେ ବେଶ୍ ମଉଜରେ ମାତିଲେ । ଏବେ କିନ୍ତୁ ସ୍ଥିତି ସଂପୂର୍ଣ୍ଣ ଭିନ୍ନ । ଯେତେ ସ୍ୱରାଜ, ସ୍ୱରାଜ କହିଲେ ଲୋକେ ଆଉ ଭଲୁନାହାନ୍ତି । ଘୃଣା ବି କରୁଛନ୍ତି ଅସହଯୋଗୀଙ୍କୁ । ତଥାପି ଖଦଡ଼ପୋଷାକର ମହତ୍ତ୍ୱ କିମିନି । ସେଇଆକୁ ଢାଲ କରିଛନ୍ତି ଅସହଯୋଗୀଏ । ତାହାର ମଧ ଦୁରୁପଯୋଗ ହେଲା ଅନେକତ୍ର । ଗାନ୍ଧିଜୀ ଯେଉଁ ମହତ ଉଦ୍ଦେଶ୍ୟ ନେଇ ଖଦଡ଼ ପରିଧାନ ପାଇଁ ପରାମର୍ଶ ଦେଇଥିଲେ, ତାହା କାର୍ଯ୍ୟକାରୀ ହେଲାନି । ଏଥିରେ ବ୍ୟଥିତ ହୋଇଛନ୍ତି ଲକ୍ଷ୍ମୀକାନ୍ତ ମହାପାତ୍ର । ଶାଣିତ ବ୍ୟଙ୍ଗ ମାଧ୍ୟମରେ ଖଦଡ଼ିଆଙ୍କ ଅପକର୍ମକୁ ଦେଖାଇ ଦେଇଛନ୍ତି "ଅହଯୋଗୀର ଆତ୍ମକଥା"ରେ ।

'ସ୍ୱାବଲମ୍ବିତା' ଗାନ୍ଧିଜୀଙ୍କ ଆର୍ଥନୀତିକ ଚିନ୍ତନର ମୂଳମନ୍ତ୍ର । କାଟି ପିନ୍ଧିବା, କୁଟି ଖାଇବା, ଗ୍ରାମ୍ୟ କୁଟୀର ଶିଳ୍ପର ପୁନରୁଦ୍ଧାର, ବଳକା ସମ୍ପତ୍ତିର ସ୍ୱେଚ୍ଛାକୃତ ବଣ୍ଟନ ଆଦି ପ୍ରସଙ୍ଗ ଉପରେ ମହାତ୍ମାଜୀ ଗୁରୁତ୍ୱ ଦେଇଥିଲେ । ଅସହଯୋଗୀଏ ଖଦଡ଼ ଧୋତି, କୁରୁତା, ଟୋପି ପିନ୍ଧିବାକୁ ଏକପ୍ରକାର ବାଧ । ଏମିତି ସମୟ ଆସିଲା ସାଧାରଣ ଲୋକେ

ଖଦଡ଼ଧାରୀଙ୍କୁ ଢେର ସମ୍ମାନ କଲେ । ଖଦଡ଼ ଦେଶ ପ୍ରେମର ନମୁନା ହୋଇଗଲା । କିନ୍ତୁ ଗାନ୍ଧିପନ୍ଥୀଙ୍କ ଆଚରଣ, ଉଚ୍ଚାରଣ କ୍ରମେ ଆତ୍ମସ୍ୱାର୍ଥ କୈନ୍ଦ୍ରିକ ହେବାକୁ ଆରମ୍ଭ କଲା । ଖଦଡ଼ ମର୍ଯ୍ୟାଦା ରକ୍ଷା କରିପାରୁନଥିବା ଅସହଯୋଗୀଙ୍କୁ ଜନେ ତୁଚ୍ଛ ତାଚ୍ଛଲ୍ୟ କରିବାକୁ ଆରମ୍ଭ କଲେ ।

କଥାରେ କହନ୍ତି "ସବୁ ଚୁଲି ମୁହଁ ପଶ୍ଚିମକୁ" । ପ୍ରକୃତିର ନିୟମ ୟୁନିଫରମଟି ଏ କଥାଟା ସତ ଏକା; ସବୁ କୁକୁରଙ୍କ ଲାଙ୍ଗୁଡ ବଙ୍କା । ଯେଉଁ କୁକୁରଙ୍କ ଲାଙ୍ଗୁଡ ବଙ୍କା ନୁହେଁ; ସେଉଟା କୁକୁର ନୁହେଁ । ସେ ଗଧ, ଗୋରୁ, ଯାହା ଇଚ୍ଛା ତାହା ହୋଇପାରେ; କିନ୍ତୁ କୁକୁର ସେ କଦାପି ହୋଇ ନପାରେ । ସେହିପରି ଖଦଡ ଯେ ନପିନ୍ଧିଛି, ସେ ଆଉ ଯାହା ହେଉ ପଛକେ ଦେଶ ହିତୈଷୀ ନୁହେଁ; ସେ ପୀର ହୋଇ ପାରେ, ପୟଗମ୍ବର ହୋଇପାରେ; କିନ୍ତୁ 'ଜନନୀ ଜନ୍ମଭୂମିଶ୍ଚ' ବୋଲି ଯେଉଁ ଦେଶ, ତାହାର ସେ ହିତୈଷୀ, ତାହା କେବେ ନୁହେଁ ।  ଯେ ଖଦଡ଼ ପିନ୍ଧିଲା ସେ ହେଲା ଦେଶହିତୈଷୀ । ଯେ ନିଶ ରଖିଲା, ସେ ହେଲା 'ନିଶୁଆ ତେଲି' । ଅତଏବ ତା'ର ଅବାରିତ ଦ୍ୱାର, ସେ ଚୋର ହେଉ, ରିସ୍ୱତ ଖୋର ହେଉ, ଗାଲକଟା ହେଉ ବା ଜେଲ୍ ଆସାମୀ ହେଉ, ଖଦଡ ପାଶ୍‌ଟା ହାତରେ ଥିଲେ ତା'ର ସାତ ଖୁଣ ମାଫ୍ । ଏଣୁ ଅସହଯୋଗୀଙ୍କୁ ଖଦଡ଼ ପିନ୍ଧିବା ପାଇଁ ସବୁବେଳେ ଖାସ୍ ତାକିତ-ଅନ୍ତତଃ ପ୍ରକାଶ୍ୟ ସ୍ଥାନମାନଙ୍କରେ । ଖଦଡ଼ ସେମାନଙ୍କ ଜାତିର ବ୍ୟାଜ, ଏହି ବ୍ୟାଜ ଦେଖିଲେ ପରସ୍ପରରେ ଗୁପ୍ତ କଥାବାର୍ତ୍ତା ହୁଅନ୍ତି । ଏହା କୁଆଡେ ନଥିଲେ ପାର୍ଟି ସିକ୍ରେଟ୍ ବାହାରେ ପଡିଯାନ୍ତା ।  କଥାରେ ଅଛି ବାର ଜାତି ତେରଗୋଲା, ବଇଷମ ହେଲେ ସବୁ ଗଲା ।ଏ କଥାଟି ଅସହଯୋଗୀଙ୍କ ପାଇଁ ପ୍ରଜୁଯ୍ୟ ।

ଖଦଡ଼ଧାରୀମାନେ ନୂତନ ଉପାୟଟିଏ କାଢ଼ିଲେ, ବିଲାତି ହାକିମଙ୍କ ପାଖଲଗା ହେବାପାଇଁ ତାଙ୍କ ଚଳଣିକୁ ଆଦରି ନେଲେ । ଜଣେ ଭଲ ହାକିମଥିଲେ । ସ୍ୱରାଜପାର୍ଟି ନେତାଙ୍କ ଉପରେ ତାଙ୍କର କଡା ନଜର ନଥିଲା । ସେ ବଦଳି ହୋଇଗଲେ । ଏବେକାର ହାକିମ ଭାରି କଡା । ତାଙ୍କୁ ଦେଖି ଅସହଯୋଗୀଙ୍କ କାରବାର ବଦଳିଗଲା । ଏଭଳି ସ୍ଥିତିରେ ଛାତ୍ର ଅସହଯୋଗୀଟି କହେ, " କେହି କେହି ଖଦଡ଼କୁ ଅଠପହରି କରି, ହେଟ୍, କୋଟ୍ ଆସ୍ତେ ଆସ୍ତେ ଚଳାଇବାର ବନ୍ଦୋବସ୍ତ କଲେଣି । କାରଣ ଶୁଣା ଯାଉଛି କି, ନୂଆ ହାକିମ ଯେ ଆସିଛନ୍ତି, ତାଙ୍କର କୁଆଡେ ଭାରି ଖଦଡ଼ ବିଦ୍ୱେଷ । ପାଠକ ହସିବେ ନାହିଁ, ଆମ ଦଳର ରୀତି ଏହିପରି । ଯେତେବେଳେ ଯୁଆଡେ ପାଣି ବରଷେ,

ଆମେ ସେଇ ଆଡକୁ ଛତା ଦେଖାଉଁ ପରା । ଆମେ ଆପଣାର କାମ ହାସଲ କରିବା ପାଇଁ ଲୋକଙ୍କ ସାଙ୍ଗରେ ଦୋସ୍ତି କରିଥାଉଁ; ମାତ୍ର କାହାରି ବିପଦ ଦେଖିଲା କ୍ଷଣି, ଆମେ ତା ମୁହଁକୁ ନଚାହିଁ ପଛଘୁଞ୍ଚା ମାରୁଁ । ନିଜର ଜାତି ବା ଦେଶର ଅପେକ୍ଷା ନରଖି, ଆପଣା ଦାନାକୁ ବିପନ୍ନ କରି ଯେ ଆମର ଆଖିବୁଜା ଉପକାର କରିଗଲେ, ଏବେ ସେହି ଲୋକର ବିପଦ ବେଳେ ଆମେ ଏପରି ଭାବ ଦେଖାଇଲୁଣି ଯେ, କାହାର ବାପର ସାଧ ନାହିଁ କହିବ, ତାଙ୍କ ସାଙ୍ଗରେ ଆମର କେବେ କିଛି ସଂପର୍କ ଥିଲା ବୋଲି । କେବଳ ଚକ୍ଷୁ ଲଜ୍ଜାକୁ ଟିକିଏ ଟିକିଏ ଆମ୍ଭୁଡି କାମୁଡି ହେଉଛୁ, ଏତିକି; ତାହା ମଧ୍ୟ ଗୋପନରେ ।" କ୍ଷମତା ଲୋଭୀ ଅସହଯୋଗୀଙ୍କ ଏତାଦୃଶ ବିଶ୍ୱାସଘାତକ ଆଚରଣକୁ ନିନ୍ଦା କରିବା ପାଇଁ ଶବ୍ଦ ପୁଞ୍ଜ ନିଅ ପଡିବ ନିଶ୍ଚୟ ! ବିଦେଶୀଙ୍କ ପଦଲେହନକାରୀ, ସ୍ୱାର୍ଥନ୍ୱେଷୀ ମାନଙ୍କ ଯୋଗୁଁ ଦେଶର ଉନ୍ନତି ଅନ୍ୟୁନ ଦଶ ବର୍ଷ ପଛେଇ ଗଲା କହିଲେ ଭୁଲ ହେବନାହିଁ ।

ସ୍ୱାରାଜ ପାଇଁ ଲଢ଼େଇର ଦ୍ୱାହି ଦେଲେ ସ୍ୱରାଜପାର୍ଟିବାଲା । କିନ୍ତୁ ଭିତରେ ଭିତରେ ନିଜର ବଡ଼ତି ପାଇଁ ଲାଗି ପଡିଲେ । ଜିଲ୍ଲା ବୋର୍ଡ ହେଉ ବା କାଉନ୍‌ସିଲ୍ ପାଇଁ ଭୋଟ ମାଗିବାବେଳେ ଲୋକଙ୍କୁ କେତେ କ'ଣ କୁହାବୋଲା କଲେ, ବଡ ବଡ଼ ପ୍ରତିଶ୍ରୁତି ଦେଲେ । ସବୁ ହାଇପ୍ରୋମିଜେସ୍, ହାତୀ ନେ, ଘୋଡା ନେ- ଏମିତି କଥା କହି ଓଡ଼ିଆଙ୍କୁ ଭୁଲାଇବାରେ ଲାଗିପଡିଲେ ପାର୍ଥୀମାନେ । ତାଙ୍କ ସୈନ୍ୟ ସାମନ୍ତ ମଧ୍ୟ ବାରମ୍ବାର ଅନୁଭୂତି ଦ୍ୱାରା ବେଶି ଧୁରନ୍ଧର ହୋଇଗଲେଣି । ବର୍ତ୍ତମାନ ବୋର୍ଡଟା ତାଙ୍କ ହାତରେ । ସ୍କୁଲ ମାଷ୍ଟରମାନେ କେହି କେହି ଲୋଭରେ ହେଉ ବା କେହି ବଦଳି ଡରରେ ହେଉ ସେମାନଙ୍କୁ ସାହାଯ୍ୟ କରନ୍ତି, ହେଲେ ବିଡ଼ମ୍ବିତ ଭାଗ୍ୟର ଶିକାର ହେଲେ ଅସହଯୋଗୀମାନେ । ସ୍ୱରାଜପାର୍ଟିର ଜଣେ ନେତାଙ୍କ ଅକାଳ ବିୟୋଗ ହେଲା । ସେ ମହାଶୟ ସେମାନଙ୍କର ଅନେକ ଉପକାର କରିଥିଲେ; ମାତ୍ର ସ୍ଥାୟୀ ଭାବରେ କିଛି ସଂସ୍ଥା ନକରି ଯିବାକୁ ଯେଉଁ ଶେଷ ଉଦ୍ୟମଟା ଭିଡିଥିଲେ, ତାହା ଈଶ୍ୱରଙ୍କ ଇଚ୍ଛାରୁ ପଣ୍ଡ ହୋଇଗଲା । ଛାତ୍ରଟି ସେହି ନେତାଙ୍କର କାର୍ଯ୍ୟକଳାପକୁ ଏକ ବିଦ୍ରୂପାତ୍ମକ ଢ଼ଙ୍ଗରେ ବଖାଣେ, "ପରିତାପ ! ପରିତାପ ! ଏଇଟା କୃତକାର୍ଯ୍ୟ ହୋଇଥିଲେ ସ୍ୱରାଜ ଇତିହାସରେ ତାଙ୍କ ନାମ ଅମର ହୋଇଥାନ୍ତା, ଆଉ ଆମର ବାଲ୍‌ବଚ୍ଚାମାନେ ତ୍ରିସନ୍ଧ୍ୟା ତାଙ୍କର କଲ୍ୟାଣ କାମନା କରୁଥାନ୍ତେ !"

ସ୍ୱରାଜୀଙ୍କ ଭିନ୍ନ ଭିନ୍ନ ବେପାର । ସେଦିନ ଦଳେ ଗୋଟେ ଜିଲ୍ଲାରେ ବେପାରଟାଏ ଆରମ୍ଭ କଲେ, ଏଥିରୁ ଢେର ଲାଭ ପାଇଲେ । ଏକଥା ଦେଖି ଅନ୍ୟମାନଙ୍କ

ପାଟିରୁ ଲାଳ ଗଡିଲା । ସେ ବେପାର ଦୁଇପ୍ରକାର ଲାଭ୍ର-ଧନ, ମାନ । ଗୋଟଏ ଜିଲ୍ଲାରେ ବନ୍ୟାଯୋଗୁଁ ଫସଲ ନଷ୍ଟ ହୋଇଗଲା । ସେଥି ଯୋଗୁଁ ସେ ବର୍ଷ ଭାରି ଖାଦ୍ୟାଭାବ ହେଲା, ଲୋକେ କଷ୍ଟ ପାଇଲେ । ଅସହଯୋଗୀଙ୍କ ପରି ବେକାର ହିତୈଷୀମାନଙ୍କୁ ଗୋଟା ନୂତନ ଉଦ୍ୟମର ପନ୍ଥା ମିଳିଗଲା । ସମ୍ବାଦ ଉପରେ ସମ୍ବାଦ, ପତ୍ର ଉପରେ ପତ୍ର, ପ୍ରବନ୍ଧ, ଟେଲିଗ୍ରାମ ପ୍ରଭୃତି ପଠାଇବା ରୂପ ସାମାନ୍ୟ ଖରଚ କରି, ସମଗ୍ର ଭାରତବ୍ୟାପୀ ଗୋଟାଏ ମସ୍ତ ଆନ୍ଦୋଳନ ରୂପ ବେପାର ଲଗାଇ ଦିଆଗଲା । ଘରିଆଡେ ହା-ହୁତାଶ କି, " ଘୋର ଦୁର୍ଭିକ୍ଷ- ଅମୁକ ଜାଗାରେ ସହସ୍ର ଲୋକ ଘାସପତର ଖାଇ ଯାଉଛନ୍ତି- ଶତ ଶତ କଙ୍କାଳସାର ହୋଇ ମରୁଛନ୍ତି ।" ଏଥିରେ ଗାନ୍ଧି କାନ୍ଦିଲେ, ଲଜପତ୍ ଚିତ୍କାର କଲେ, ଏଣ୍ଡରୁଜ୍ ଚିଲା ମାରିଲେ । ସୁତରାଂ ପଇସାର ଅଭାବ ରହିଲା ନାହିଁ । ନଈ, ସୁଅପରି ମଧ୍ୟ ବିଦେଶରୁ ଟଙ୍କା ବୋହି ଆସିଲା । ସରକାରଙ୍କ ନାହିଁ ନାହିଁ ସତ୍ତ୍ୱେ; ବାଧ ହୋଇ କିଛି କିଛି ଏ କଥାକୁ ସ୍ୱୀକାର କଲେ । ଫଳସ୍ୱରୂପ କେତେଜଣ ନେତାଙ୍କ ନାଁ ବାଜି ଗଲା । ଅଜ୍ଞ ବହୁତରେ - ସମସ୍ତଙ୍କର କୋଠାବାଡି ହେଉବା ନହେଉ- ହାତଟା ଚିକଣ ଧରିଲା । ଏଥିରେ ଉତ୍ସାହିତ ହୋଇ ଛାତ୍ର ଅସହଯୋଗୀଙ୍କ ପରି ଆଉ ପାଞ୍ଚ ଜଣ ସେଇ ପ୍ରକାର କୌଶଳ ଅବଲମ୍ବନ କଲେ । ସରକାରଙ୍କ ବଡ଼ ହାକିମ ତାଙ୍କ ହାତରେ । ହଠାତ୍ ରାତି ପାହିଲା ବେଳକୁ ଦେଶଯାକ ଖବରକାଗଜରେ ଦୁର୍ଭିକ୍ଷ ସମ୍ବାଦ ଘୋଷଣା କରାଗଲା । ଏଥର ଗାନ୍ଧି ମୁହଁ ଖୋଲିଲେନି; ଏଣ୍ଡରୁଜ୍ ବା ରାମକୃଷ୍ଣ ଦଳ କି ଭାରତ ସେବା ସମିତି ଆସିଲେନି । ଲୋକେ ଘାସ ଖାଉଛନ୍ତି, କଙ୍କାଳ ସାର ହେଲେଣି, ମରିଗଲେଣି ଇତ୍ୟାଦି ଯେତେ ଲେଖାଲେଖି କଲେ; କିଛି ଫଳ ମିଳିଲାନି । ଈଷପ୍ କଥାବଳୀର ସେଇ 'ବାଘ ଓ ମେଷପାଳକ' ଗଳ୍ପ ପରି ଦେଶ ଲୋକେ ବା ଖବରକାଗଜବାଲା କେହି ଶୁଣିଲେନି । ହାକିମମାନଙ୍କୁ ହାତକରି ଯେତେ ଆନ୍ଦୋଳନ କଲେ ମଧ କିଛି ସୁଫଳ ମିଳିଲାନି । ଏହାର କାରଣଟିକୁ ଛାତ୍ର ଅସହଯୋଗୀଟି ପ୍ରକାଶ କରିଛି । "ଆମର ଫନ୍ଦି ସବୁ ଘରି ଆଖିଆ ସରକାରଙ୍କୁ ଅଛପା ରହିଲା ନାହିଁ । ତହିଁକି ଆମ ଦେଶର କେତେକ ଅସହଣି ଲୋକେ ଆମ ବିରୁଦ୍ଧରେ ଫୋଡିଲେ । ଆମେ ତ ଘରି ଦଉଡି କଟା, ନାଗା ବାଗା, ଆମର କିଏ କ'ଣ କରିବ ? କେବଳ କେତେ ଗୁଡିଏ ସରକାରୀ ଲୋକ ବଦନାମ ହୋଇଗଲେ, ଆମର ପ୍ରଧାନ ଭରସା, ବଳ, ମୁରବି ରୂପେ, ଜଣେ ନିର୍ଦ୍ଦୋଷପ୍ରାଣୀ

ଆପଣାର ଜୀବିକା ହରାଇ ବରଫ ସେବନ କରିବାକୁ ବାହାରିଲେ" । ଏହା ଘଟିଲା ଆକସ୍ମିକ ଭାବରେ । ଏବେ ଅସହଯୋଗୀଙ୍କ 'ହା-ହତୋଽସ୍ମି' କରିବା ଛଡା ଆଉ କିଛି ନାହିଁ । ଜଣେ ଆରଜଣକୁ ପଚାରୁଛି - "ହେଲା କିସ !" ଆର ଜଣକ ଉତ୍ତର ଦେଲା- "ହେବ କିସ !"- ଏମିତିସବୁ ମିଛ ଅସହଯୋଗୀଙ୍କ କାରନାମା; ଜାତିର ଉନ୍ନତି ପଛେ ନହେଲା ନାହିଁ, କିଛି କାଳ ଧରି ସ୍ୱରାଜୀମାନେ ତ ଆପଣାର ଉନ୍ନତି କଲେ, ଦେଶକୁ ଲୁଟିଲେ !

ଉପର୍ଯ୍ୟୁକ୍ତ ଚର୍ଚ୍ଚାର ଗୋଟେ ସାର ନିର୍ଯ୍ୟାସ ହେଲା, ଗାନ୍ଧିଙ୍କ ପ୍ରବର୍ତ୍ତିତ ଅସହଯୋଗ ଆନ୍ଦୋଳନର ବିଫଳତା । ବିଭିନ୍ନ ତ୍ରୁଟି ବିଚ୍ୟୁତି ଯୋଗୁଁ ଅସହଯୋଗ ସଫଳତା ପ୍ରାପ୍ତ ହେଲାନି ; କିନ୍ତୁ ମୁଖାପିନ୍ଧା ସତ୍ୟାଗ୍ରହୀଙ୍କୁ ଗାନ୍ଧି ଚିହ୍ନିଲେ, ଦେଶବାସୀ ମଧ୍ୟ ଉଣାଅଧିକେ ଅବଗତ ହେଲେ । ବିଫଳତାର ଭିତ୍ତିଭୂମି ଉପରେ ଗାନ୍ଧି ପୁନଃ ଛିଡା କରାଇଲେ ଦ୍ୱିତୀୟ ସର୍ବଭାରତୀୟ ସ୍ତରର ମୁକ୍ତି ଯୁଦ୍ଧ । ଲବଣ ସତ୍ୟାଗ୍ରହ ମଧ୍ୟ ନାହିଁ ନଥିବା ଚାଞ୍ଚଲ୍ୟ ସୃଷ୍ଟିକଲା ସାର ଦେଶରେ । ସେତେବେଳକୁ କ୍ଷମତାଲୋଭୀ ସ୍ୱରାଜୀମାନେ ଆପଣାର ଅସ୍ତିତ୍ୱ ହରାଇ ସାରିଥିଲେ । ଏ ସମସ୍ତ ଘଟଣା ପ୍ରବାହର ସାକ୍ଷୀ ହିଁ ମହାକାଳ । ଅପକର୍ମକୁ ସେ କ'ଣ କ୍ଷମା ଦେଇଛି ନା କେବେ ଦେବ ! ତାହା ହିଁ ମହାନସ୍ରଷ୍ଟା ଲକ୍ଷ୍ମୀକାନ୍ତ ମହାପାତ୍ର ଦେଖାଇ ଦେଇଛନ୍ତି "ଅସହଯୋଗୀର ଆତ୍ମ କଥା"ରେ ।



# ଭଦ୍ରକାଳୀ ପୃଷ୍ଠଭୂମିରେ କିମ୍ବଦନ୍ତୀ

ଭଦ୍ରକ; ଏକଦା ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଥିଲା ସବ୍‌ଡିଭିଜିନ୍‌ଟିଏ । ଏବେ ଜିଲ୍ଲାର ମାନ୍ୟତା ପ୍ରାପ୍ତ । କଳା, ସାହିତ୍ୟ, ସଂସ୍କୃତି; ବିଶେଷକରି ଜାତୀୟ ମୁକ୍ତି ସଂଗ୍ରାମରେ ଏହାର ଅବଦାନ ଅତୀବ ଗୁରୁତ୍ୱପୂର୍ଣ୍ଣ । ଏଠାକାର କେତେକ ମଠ, ପୀଠ, ମନ୍ଦିର; ରକ୍ତତୀର୍ଥ ଇରମର ସହିଦ୍ ସ୍ମୃତିସ୍ତମ୍ଭ- ଏ ସମସ୍ତ ଭଦ୍ରକବାସୀଙ୍କର ଗଭୀର ଧର୍ମ ବିଶ୍ୱାସ, ତ୍ୟାଗ, ତିତିକ୍ଷା ତଥା ଦେଶ-ଜାତିପ୍ରେମର ଅମଳିନ ନିଦର୍ଶନ । ଏ ଭୂମିର କୃତି ସନ୍ତାନ ବିଶିଷ୍ଟ ମୁକ୍ତିସଂଗ୍ରାମୀ ଡକ୍ଟର ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ ମହାପାତ୍ର (ଉଭୟ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ); ସାହିତ୍ୟ ଜଗତର ଅଦ୍ୱିତୀୟ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ବହୁ ଯଶ କୀର୍ତ୍ତିର ଅଧିକାରୀ । ବିଭିନ୍ନ ଦୃଷ୍ଟିକୋଣରୁ ଏ ଜିଲ୍ଲାର ଗୁରୁତ୍ୱ ରହିଛି; ମାତ୍ର ଏହାର ନାମକରଣକୁ ନେଇ ପ୍ରତ୍ନତତ୍ତ୍ୱ ଗବେଷଣା ସ୍ୱୀକୃତ ପ୍ରମାଣଟିଏ ନାହିଁ । ଏପରି ସ୍ଥଳେ ଭଦ୍ରକ; ଭଦ୍ରକାଳୀଙ୍କ ନାମାନୁସାରେ ହୋଇଥିବା କିମ୍ବଦନ୍ତୀ ସ୍ୱୀକୃତ ।

ପ୍ରାଗ୍ ଐତିହାସିକ ଯୁଗର କଥା । ଉତ୍କଳର ଅନ୍ୟାନ୍ୟ ଅଞ୍ଚଳ ପରି ଭଦ୍ରକ ଥିଲା ଘଞ୍ଚ ଅରଣ୍ୟାନୀ ପୂର୍ଣ୍ଣ । ଏହାର ପାର୍ଶ୍ୱ ଦେଇ ପ୍ରବାହିତ ପୁଣ୍ୟତୋୟା ଶାଳନ୍ଦୀ । ଦେଶର ଅଧିକାଂଶ ନଦୀକୂଳରେ ଜନବସତି ଗଢ଼ି ଉଠିଥିବା ପବିତ୍ର ଶାଳନ୍ଦୀ ନଦୀର ଉର୍ବର ପଟୁଯୁକ୍ତ ସମତଳ ଭୂମିରେ ଭଦ୍ରକ ଜୀବନ-ଯାତ୍ରାର ଅୟମାରମ୍ଭ ହୋଇଥିବା ସ୍ୱାଭାବିକ । ଇତିହାସ ସୃଷ୍ଟିର ବହୁ ପୂର୍ବରୁ ଭଦ୍ରକ ଭଳି ଐତିହ୍ୟ ସଂପନ୍ନ ସ୍ଥାନ ଥିଲା । କିନ୍ତୁ ଓଡ଼ିଶାର ବିଧିବଦ୍ଧ ଇତିହାସ ସୃଷ୍ଟି ହେଲା ଖ୍ରୀ.ପୂ. ତିନିଶହ ଶତାବ୍ଦୀ ଠାରୁ । ମଗଧ ସମ୍ରାଟ ଅଶୋକଙ୍କ କଳିଙ୍ଗ ଯୁଦ୍ଧ ପରେ ତାଙ୍କର ଦୁଇଟି ଶିଳାଲିପି ଭୁବନେଶ୍ୱରର ଧଉଳି, ଗଞ୍ଜାମର ଜଉଗଡ଼ଠାରେ ପରିଲକ୍ଷିତ । ଏହା ଅଶୋକଙ୍କ ଶିଳାଲିପି / କଳିଙ୍ଗ ଶିଳାଲିପି ଭାବେ ଖ୍ୟାତ । ଏଗୁଡ଼ିକ ଓଡ଼ିଶା ଇତିହାସର ପ୍ରଥମ ଉତ୍ସ । ତତ୍‌ପରେ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲିପି ଏ ଦିଗରେ

ଦ୍ୱିତୀୟ ପଦକ୍ଷେପ । ଅନୁରୂପ ଭାବେ ଭଦ୍ରକାଳୀଙ୍କ ମନ୍ଦିର ପରିସରରୁ ପ୍ରାପ୍ତ ଭଦ୍ରକ ଶିଳାଲିପିରୁ ଭଦ୍ରକ ସମ୍ବନ୍ଧରେ କେତେକ ସୂଚନା ମିଳିଥାଏ । ଜଣେ କରଦ ରାଜା (ମହାରାଜା ଗଣ) ଏହି ଭୂମିକୁ ଶାସନ କରିଥିବା ଏହି ଲିପିରୁ ସୂଚନା ମିଳେ । କେତେକ ଗବେଷକ ତାଙ୍କୁ ମହାରାଜା ସୁରସେନ୍ ବୋଲି ମତବ୍ୟକ୍ତ କରିଛନ୍ତି । ମୋଗଲ ସମ୍ରାଟ ଆକବର ନିଜ ଶାସନ ଅଧୀନସ୍ଥ ଓଡ଼ିଶାକୁ ୫ଟି ସରକାରରେ ବିଭକ୍ତ କଲେ; ତନ୍ମଧ୍ୟରେ ଭଦ୍ରକ ଥିଲା ଅନ୍ୟତମ । ଏହାର ମୁଖ୍ୟ କାର୍ଯ୍ୟାଳୟ ହେଲା ଭଦ୍ରକ ସହର । ପରବର୍ତ୍ତୀ ପର୍ଯ୍ୟାୟରେ ଏହା ଅନ୍ୟ ମୋଗଲ ସମ୍ରାଟ, ବଙ୍ଗର ନିଜାମ, ମରହଟ୍ଟା; ଶେଷରେ ଇଂରେଜମାନଙ୍କର ଶାସନ ପର୍ଯାୟଭୁକ୍ତ ହେଲା । କିନ୍ତୁ ଏହାର ନାମକରଣକୁ ନେଇ ଠୋସ୍ ପ୍ରମାଣଟିଏ ପାଇଁ ଏବେବି ଅପେକ୍ଷା କରିବାକୁ ପଡ଼େ ।

ଭଦ୍ରକକୁ କେନ୍ଦ୍ରକରି ଚମତ୍କାର କିମ୍ବଦନ୍ତୀଟିଏ । ଏକଦା ଜଣେ ଚୌହାନ୍ ବଂଶୀୟ ରାଜପୁତ ଯୁବକ ଭଦ୍ରକ ବାଟେ ଜଗନ୍ନାଥ ଯାତ୍ରା କରିବା, ଘଞ୍ଚ ଜଙ୍ଗଲରେ ପଥଭ୍ରାନ୍ତ ହେବା, ଦୈବ ଯୋଗେ ତାଙ୍କର ଜଙ୍ଗଲ ମଧ୍ୟରେ ଯୋଗୀକନ୍ୟା ଭଦ୍ରାଙ୍କ ସହିତ ସାକ୍ଷାତ, ପରସ୍ପର ମଧ୍ୟରେ ପ୍ରେମ; ଭଦ୍ରାଙ୍କ ପରି ଯୁବକ ଜଣକ ଭଦ୍ରକାଳୀଙ୍କୁ ପୂଜାର୍ଚ୍ଚନାରେ ସନ୍ତୁଷ୍ଟ କରି ଏକ ଭୂଖଣ୍ଡ ପ୍ରାପ୍ତ ହେବା, ପରେ ଭଦ୍ରାଙ୍କ ସହ ତାଙ୍କର ବିବାହ ସମ୍ପନ୍ନ, ମା' କାଳୀଙ୍କ ଅଶେଷ କୃପାରୁ ମିଳିଥିବା ରାଜ୍ୟର ରାଜା ହେବାର ସୌଭାଗ୍ୟ ଲାଭ, ଭଦ୍ରକାଳୀ ମନ୍ଦିର ପ୍ରତିଷ୍ଠା -ଏଗୁଡିକ କିମ୍ବଦନ୍ତୀର ଅଂଶବିଶେଷ । ତାଙ୍କରି ନାମାନୁସାରେ ଭଦ୍ରକ ନାମକରଣ ହୋଇଥିବା ପ୍ରସଙ୍ଗଟି ସମ୍ପୂର୍ଣ୍ଣ କିମ୍ବଦନ୍ତୀର କଥା । ଏହି କିମ୍ବଦନ୍ତୀଟି କେବଳ ଭଦ୍ରକ ଅଧିବାସୀଙ୍କୁ ଆଚ୍ଛନ୍ନ କରିଛି ତାହା ନୁହେଁ, ସେଇ ମାଟିର ସୁଯୋଗ୍ୟ ସାହିତ୍ୟିକ ଲକ୍ଷ୍ମୀକାନ୍ତ ମହାପାତ୍ର ଭଦ୍ରକାଳୀ (କିମ୍ବଦନ୍ତୀ) ମଧ୍ୟ ରଚନା କରିଛନ୍ତି । ଏଥିରେ ଶକ୍ତିପୀଠ ଭଦ୍ରକାଳୀଙ୍କ ପୃଷ୍ଠ ଭୂମିରେ ଥିବା କିମ୍ବଦନ୍ତୀଟି ଅତି ପ୍ରାଞ୍ଜଳ ଭାବେ ଚିତ୍ରିତ ।

ଭଦ୍ରକ ସହର ଠାରୁ ୭ ମାଇଲ ଦୂର । ଶୀର୍ଣ୍ଣକାୟ ଶାଳନ୍ଦୀ ନଦୀ ତଟରେ ଭଦ୍ରକାଳୀ ମନ୍ଦିର । ଭଦ୍ରକ ସହରର ଅନେକ କରଣ ଯଜ୍ଞୋପବୀତ ଧାରଣ କରନ୍ତି । ସେମାନେ ନିଜକୁ ଚୌହାନ ବଂଶୀୟ ରାଜପୁତର ପରିଚୟ ଦେଇଥାନ୍ତି । ଏମାନଙ୍କର ନ୍ୟୂନାଧିକ କିଛି କିଛି ଭୂସମ୍ପତ୍ତି ଅଦ୍ୟାବଧି ରହିଛି । ସେହି ଦେବୀ ମନ୍ଦିର ଭଦ୍ରକାଳୀ ରୂପେ ଖ୍ୟାତ । ଏହା ଉଲ୍ଲେଖ କରିଛନ୍ତି ଲେଖକ ଲକ୍ଷ୍ମୀକାନ୍ତ । କିମ୍ବଦନ୍ତୀ ହେଲେ ହେଁ ଧୂଆଁ ସ୍ଥାନରେ ନିଆଁର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ସେଇ ନ୍ୟାୟରେ ଭଦ୍ରକ ସହିତ ଚୌହାନ ରାଜବଂଶର ସାମଞ୍ଜସ୍ୟକୁ ମଧ୍ୟ ଅସ୍ୱୀକାର କରାଯାଇ ନପାରେ ।

ପୁଣ୍ୟ ତୀର୍ଥ ଉତ୍କଳ । ବହୁକାଳ ପୂର୍ବେ ଏହା ପରାଧୀନତା ଶୃଙ୍ଖଳ ବଦ୍ଧ ନଥିଲା । ଉତ୍କଳୀୟମାନେ ସ୍ୱାଧୀନ, ପରାକ୍ରମଶାଳୀ, ଉନ୍ନତ ଜାତି ଭାବେ ପ୍ରବାସୀ, ଜାତିଙ୍କର ସମ୍ମାନ ଓ ଭୟର କେନ୍ଦ୍ରସ୍ଥଳୀ ଥିଲା । ଏହା ମଧ ହିନ୍ଦୁଧର୍ମ, ହିନ୍ଦୁ ତୀର୍ଥ ନିଚୟର ପେଣ୍ଠସ୍ଥଳୀ ଥିଲା । ବହୁ ପ୍ରବାସୀ ଉତ୍କଳ ପ୍ରତି ଆକୃଷ୍ଟ ଥିଲେ; କେହି ଶିଳ୍ପ ବିଜ୍ଞାନର ପରାକାଷ୍ଠାଗତ ଉତ୍କଳୀୟ ଶିଳ୍ପୀମାନଙ୍କର ମନୋମୁଗ୍ଧକର କାରୁକାର୍ଯ୍ୟ ଦେଖିବାକୁ, କେହି ଜଳାଧିବିହାରୀ ଜଗନ୍ନାଥଙ୍କ ଦର୍ଶନ ଲାଭ କରି ମୁକ୍ତିପଥ ଉନ୍ମୁକ୍ତ କରିବାକୁ ଏହି ପୁଣ୍ୟ ଭୂମିକୁ ଆଗମନ କରୁଥିଲେ । ସେତେବେଳେ ପୁରୁଷୋତ୍ତମ ଧାମକୁ ନିର୍ଦ୍ଦିଷ୍ଟ ଯାତାୟତର ସୁବିଧା ନଥିଲା । ଏଣୁ ପ୍ରବାସୀ ତୀର୍ଥ ଯାତ୍ରୀଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ଅନୁରୂପ ଦଶା ଭୋଗିଥିଲେ ଦୂରାଗତ ଅଜ୍ଞାତପଥ ଦୁଇ ଚୌହାନ୍ ବଂଶୀୟ ରାଜପୁତ ଯୁବକ । ସେମାନେ ଭଦ୍ରକ ବାଟ ଦେଇ ଶ୍ରୀକ୍ଷେତ୍ରକୁ ଯାଉଥିବା ସମୟରେ ଘନ ଜଙ୍ଗଲ ମଧ୍ୟରେ ଦିଗହରା ହେଲେ । ଘନତମିସ୍ରା ବନଭୂମିକୁ ଆବୋରି ବସିଲା । ହିଂସ୍ରଜନ୍ତୁଙ୍କ ବିକଟ ଚିତ୍କାର; ଏସବୁ ଭୟାନକ ଦୃଶ୍ୟ, ଅସ୍ତ୍ରଶସ୍ତ୍ର ସଜ୍ଜିତ ଦୁଇ ରାଜପୁତଙ୍କ ନିଷ୍ଠାରେ କୌଣସି ବିଘ୍ନ ଆଣିପାରିନଥିଲା । କିନ୍ତୁ ନିୟତି ନିରଙ୍କୁଶ । ହଠାତ୍ ଏକ କ୍ଷୀଣ ଆଲୋକରଶ୍ମି ଯୁବକଦ୍ୱୟଙ୍କ ଆଶା ସଞ୍ଚାର କଲା । ଉଭୟ ଏହାକୁ ଅନୁସରଣ କରି ପହଞ୍ଚିଲେ ଗୋଟେ ଯୋଗୀ କୁଟୀର ନିକଟରେ । କୁଟୀରରେ ଥିଲେ ଜଣେ ଆଲୁଳାୟିତ ଘନନୀଳ କୁନ୍ତଳା ଆଲୋକ ସାମାନ୍ୟା ଯୋଗୀ କନ୍ୟା । ଆଉ ଜଣକ ତେଜସ୍ୱୀ ଯୋଗୀ । ତାଙ୍କର ବର୍ଣ୍ଣ ଗୌର, ମସ୍ତକରେ ଦୀର୍ଘ ଜଟା, ଶ୍ମଶ୍ରୁ ବିମଣ୍ଡିତ ମୁଖ ମଣ୍ଡଳ ଦିବ୍ୟ ଜ୍ୟୋତି ପୂର୍ଣ୍ଣ । ସେଇ ଯୋଗୀ ଥିଲେ ମାତୃ ଉପାସକ । ଯୁବକ ଦ୍ୱୟ ଆପଣାର ଜଗନ୍ନାଥ ଯାତ୍ରା ସମ୍ପର୍କରେ ସୂଚନା ଦେଲେ ଯୋଗୀଙ୍କୁ । ଯୋଗୀଙ୍କ କୁଟୀରରେ ସେମାନଙ୍କୁ ଆତିଥ୍ୟ ମିଳିବାରେ ତ୍ରୁଟି ରହିଲାନି ।

ଲକ୍ଷ୍ମୀକାନ୍ତ ଦୁଇ ଦୁଃସାହାସୀ ନୀଳାଚଳ ଧାମ ଯାତ୍ରୀଙ୍କ ସମ୍ପର୍କରେ ସୂଚନା ଦେବା ସଙ୍ଗେସଙ୍ଗେ ସେମାନଙ୍କର ବୀରତ୍ୱର କଥା କହିବାକୁ ମଧ ଭୁଲି ନାହାନ୍ତି, "ବୀରତ୍ୱ ରାଜପୁତ ଜାତିର ସ୍ୱଭାବ ସିଦ୍ଧ ଗୁଣ । ଭୟର ଶତ ସହସ୍ର କାରଣ ଥିଲେ ମଧ ସେମାନେ ଭୀତ ନ ହୋଇ ଦ୍ୱିଗୁଣ ଉତ୍ସାହରେ ଭୟର ସମ୍ମୁଖୀନ ହୁଅନ୍ତି ।" କିନ୍ତୁ ଆମ୍ଭେମାନେ ବିଲୁଆ ଡାକ ଶୁଣିଲେ ଲାଙ୍ଗୁଡ଼ ମୋଡ଼ି କଣରେ ପଶୁ ।" ପ୍ରକାଶ ଥାଉକି, ଉପର୍ଯ୍ୟୁକ୍ତ ଦୁଇ ରାଜପୁତ ଶତସିଂହ ପରାକ୍ରମୀ ଥିଲେ । ସେମାନଙ୍କ ମଧ୍ୟରୁ କନିଷ୍ଠ ଜଣକ ଜ୍ୱରାକ୍ରାନ୍ତ ହେଲେ । ଯୋଗୀକନ୍ୟାଙ୍କ ସେବା ଯତ୍ନରେ ଆରୋଗ୍ୟ ଲାଭ କଲେ, ଉଭୟଙ୍କ ମଧ୍ୟରେ

ନିବିଡ଼ ପ୍ରଣୟ ହେଲା । ସାହାସୀ ଯୁବକ ଜଣକ ଏକ ଘନ ଅନ୍ଧାର ରାତ୍ରିରେ କାଳୀଙ୍କ ଆରାଧନା କରିବାକୁ ଯାଉଥିବା ଯୋଗୀଙ୍କୁ ଗୁପ୍ତ ଅନୁସରଣ କରି ସୁଡ଼ଙ୍ଗ ନିକଟରେ ପହଞ୍ଚିଲେ । ଯୋଗୀଙ୍କ ପ୍ରସ୍ଥାନ ଅନ୍ତେ ଯୁବକ ସୁଡ଼ଙ୍ଗ ମଧ ଦେଇ ଗୋଟେ ଅପ୍ରଶସ୍ତ ସୁଗନ୍ଧ ଯୁକ୍ତ କୋଠରୀରେ ଉପସ୍ଥିତ ହେଲେ । ପ୍ରକୋଷ୍ଠ ମଧରେ ଗୋଟେ ଘୃତଦୀପର କ୍ଷୀଣରଶ୍ମି ମଧରେ ସେ ଦେଖିଲେ, "ପୁରୋଭାଗରେ ଘୋରଦର୍ଶନା, କରାଳବଦନା, ଲୋଳିତ ଜିହ୍ୱା କାଳୀ ପ୍ରତିମା ।" ଦେବୀଙ୍କୁ ପୂଜାର୍ଚ୍ଚନାରେ ସନ୍ତୁଷ୍ଟ କଲେ ଯୁବକ । ପରଦିନ ଘୋର ନିଦ୍ରାରେ ଥିବା ବେଳେ ତାଙ୍କୁ ହେଲା ସ୍ୱପ୍ନାଦେଶ, "ବତ୍ସ ତୋର ଭାଗ୍ୟ ସୁପ୍ରସନ୍ନ, ଏତେ ଦିନ ପର୍ଯ୍ୟନ୍ତ ଯୋଗୀଙ୍କ ବ୍ୟତୀତ ଅନ୍ୟ କେହି ମୋର ଦର୍ଶନ ଲାଭ କରିନଥିଲେ । ତୁହି ଆଜି ନିଜର ସାହସ ବଳରେ ମୋତେ ଦର୍ଶନ କଲୁ । ମୁଁ ତୋ ପ୍ରତି ସନ୍ତୁଷ୍ଟ ।" ତତ୍‌ସହିତ ଯୁବକଙ୍କୁ ନିଜର ଖଡ଼୍‌ଗ ଧରି ଅଗ୍ରସର ହେବାକୁ ନିର୍ଦ୍ଦେଶ ଦେଉଥିଲେ । ସେ ଯେତେ ଦୂର ଯିବେ ସେ ଭୂଖଣ୍ଡର ସେ ହେବେ ଅଧିକାରୀ । ଦେବୀ ତାଙ୍କ ପଛେ ପଛେ ଥିଲେ; ମାତ୍ର ସର୍ତ୍ତ ଥିଲା ଯୁବକ ପଛକୁ ଫେରି ଚାହିଁବେନି । ଦେବୀଙ୍କ ନିର୍ଦ୍ଦେଶ ଅନୁଯାୟୀ ସେଇ ରାତ୍ରିରେ ଚାଲିଲେ ଯୁବକ, ପଛରେ ଶୁଭୁଥିଲା ଗୁଣୁଝୁଣୁ ନୂପୁର ନିକ୍ୱଣ । ବାଟରେ ପଡ଼ିଲା ଶାଳନ୍ଦୀର ବାଲୁକା ଶର୍ଯ୍ୟା । ଶୁଭିଲାନି ଆଉ ନୂପୁର ସ୍ୱର । ଯୁବକ ପଶ୍ଚାତବଲୋକନ କରି ଦେଖିଲେ ସ୍ୱୟଂ ଦେବୀ ପ୍ରତିମା ଦଣ୍ଡାୟମାନ ।  ଅତିକ୍ରମ କରିଥିବା ଭୂଖଣ୍ଡର ସେ ରାଜା ହେଲେ । ପ୍ରତିଷ୍ଠା କଲେ ଭଦ୍ରକାଳୀ ମନ୍ଦିର । ଯୋଗୀ କନ୍ୟା ଭଦ୍ରାଙ୍କ ପାଣି ଗ୍ରହଣ କରି ସୁଖରେ ରାଜତ୍ୱ କଲେ । ଭଦ୍ରକାଳୀଙ୍କୁ ନେଇ ଆପଣା ରାଜ୍ୟର ନାମକରଣ କଲେ ଭଦ୍ରକ । କହିବା ବାହୁଲ୍ୟ ଯେ, ଭଦ୍ରକାଳୀ ଓଡ଼ିଶାର ଅନ୍ୟତମ ଶକ୍ତିପୀଠର ମାନ୍ୟତା ପ୍ରାପ୍ତ ।

ଓଡ଼ିଶା ଜନଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅଧାୟ ଜନଶ୍ରୁତି, କିମ୍ବଦନ୍ତୀ, ଲୋକକଥା । ବିଶେଷ କରି ସାରା ରାଜ୍ୟରେ ପ୍ରତିଷ୍ଠିତ ଧର୍ମାନୁଷ୍ଠାନ ପଛରେ ଊଣା ଅଧିକେ ଏକ କିମ୍ବଦନ୍ତୀ ବିଜଡ଼ିତ । ଏପରିକି ବିଶ୍ୱର ସର୍ବଶ୍ରେଷ୍ଠ ଧର୍ମପୀଠ ପୁରୁଷୋତ୍ତମ ଧାମକୁ ନେଇ ରାଜା ଇନ୍ଦ୍ରଦ୍ୟୁମ୍ନ, ରାଣୀ ଗୁଣ୍ଡିଚା, ନୀଳମାଧବଙ୍କ ପୂଜକ ଶବର ବିଶ୍ୱାବସୁ, ତାଙ୍କ କନ୍ୟା ଲଳିତାଙ୍କ ସହ ବିଦ୍ୟାପତିଙ୍କ ବିବାହ, ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗରୁ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ଆଣି ଶ୍ରୀମନ୍ଦିର ପ୍ରତିଷ୍ଠା ଠାରୁ ଗାଲମାଧବ ଉପାଖ୍ୟାନ ଠାରୁ ଆରମ୍ଭ କରି ତିନିଦିଅଁଙ୍କର ଅଧାଗଢ଼ା ପ୍ରସଙ୍ଗ ଇତ୍ୟାଦି କିମ୍ବଦନ୍ତୀର ଅଂଶବିଶେଷ; ମାତ୍ର ଏହାର ଖିଅଧରି କେତେକ ଐତିହାସିକ ତଥ୍ୟ ନିର୍ଣ୍ଣୟ ମଧ ସମ୍ଭବ ହୋଇପାରିଛି । ଅନୁରୂପ ଭାବେ ଭଦ୍ରକ,

ଭଦ୍ରକାଳୀଙ୍କ ମନ୍ଦିର ପ୍ରତିଷ୍ଠାକୁ ନେଇ ଉଦ୍ଭାବିତ କିମ୍ବଦନ୍ତୀରୁ ନିଶ୍ଚୟ ଇତିହାସର ଝଲକ ମିଳିପାରିବ; ତେବେ ଏହା ଗବେଷଣା ସାପେକ୍ଷ ।

ଶାଳନ୍ଦୀ ତଟରେ ଦଣ୍ଡାୟମାନ ଭଦ୍ରକାଳୀ ମନ୍ଦିର । ଏଠାରୁ ପ୍ରାପ୍ତ ଶିଳାଲିପିଟି ଭୁବନେଶ୍ୱର ରାଜ୍ୟ ଅଭିଲେଖାଗାରରେ ସଂରକ୍ଷିତ । ବର୍ଷସାରା ଶହଶହ ଶ୍ରଦ୍ଧାଳୁଙ୍କ ଭିଡ଼ ଦେବୀଙ୍କ ପୀଠରେ । ବହୁ ବିଦେଶୀ ପର୍ଯ୍ୟଟକଙ୍କ ଏହା ଦୃଷ୍ଟି ଆକର୍ଷଣ କରେ । କିନ୍ତୁ ପୁରାଣ ବର୍ଣ୍ଣିତ ଦେବୀମୂର୍ତ୍ତି; ବର୍ତ୍ତମାନର ପ୍ରତିମା ମଧ୍ୟରେ ଢେର ତାରତମ୍ୟ ପରିଲକ୍ଷିତ । ବିଶ୍ୱର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟମୟୀ ଦେବୀ ପ୍ରତିମା, ନାନାଦି ସୁବର୍ଣ୍ଣ ଅଳଙ୍କାର ପରିହିତା, ଚତୁର୍ଭୁଜା, ତ୍ରିଲୋଚନା, ଖଡ଼୍‌ଗ, ଖର୍ପର ଧାରିଣୀଙ୍କ ସିଦ୍ଧସୂତ୍ରା, ଅଭୟ ମୁଦ୍ରା ପ୍ରଦାୟିନୀ ଭଦ୍ରକାଳୀ ଏବେ ସମ୍ପୂର୍ଣ୍ଣ ଭିନ୍ନ ରୂପା । ଏବେକା ପ୍ରତିମାଙ୍କର ସିଂହବାହନ, କୋଳରେ ତାଙ୍କର ଶିଶୁଟିଏ ଯାହା ପୁରାଣରେ ସୂଚିତ ପ୍ରତିମା ସହ ସାମଞ୍ଜସ୍ୟ ଆପାତତଃ ନାହିଁ । ସମ୍ପ୍ରତି ମନ୍ଦିରରେ ସ୍ଥାପିତ ପ୍ରତିମୂର୍ତ୍ତି ମା' ମଙ୍ଗଳାଙ୍କ ପରି ପରିଦୃଶ୍ୟମାନା । ସମ୍ଭବତଃ ମଧ୍ୟଯୁଗରେ ମୁସଲମାନଙ୍କ ଆକ୍ରମଣ ଯୋଗୁଁ ପ୍ରକୃତ ଭଦ୍ରକାଳୀ ମୂର୍ତ୍ତିଟି ନଷ୍ଟ ହୋଇ ଯାଇ ଥାଇପାରେ; ପରବର୍ତ୍ତୀ ସମୟରେ ସେହି ସ୍ଥାନରେ ପୁନଃ ଦେବୀ ପ୍ରତିମାଟି ସ୍ଥାପନ କରାଯାଇ ଥିବା ଅନୁମାନ କରାଯାଏ । 'ଯଦି', 'କିନ୍ତୁ' ର ଉର୍ଦ୍ଧ୍ୱରେ ଭଦ୍ରକାଳୀ ଭଦ୍ରକ ଜିଲ୍ଲାବାସୀଙ୍କ ଧର୍ମୀୟ ଅନୁଚିନ୍ତନର କେବଳ ମୁଖ୍ୟାଂଶ ନୁହେଁ; ଏହି ମାତୃପୀଠ ସହ ଜଡ଼ିତ ଆଧାତ୍ମ ଚେତନା ସମଗ୍ର ଓଡିଶାରେ ଚିର ଭାସ୍ୱର । ଭଦ୍ରକର ଭୂମିପୁତ୍ର ଲକ୍ଷ୍ମୀକାନ୍ତ ମହାପାତ୍ର ଆପଣାର ଭଦ୍ରକାଳୀ (କିମ୍ବଦନ୍ତୀ) ଗଦ୍ୟ ରଚନା ମାଧ୍ୟମରେ ଏହି ପବିତ୍ର ପୀଠକୁ ଅଧିକ ମହିମାନ୍ୱିତ କରିପାରିଛନ୍ତି । କେବଳ ସେତିକିରେ ତାଙ୍କ ଲେଖନୀ ସୀମିତ ରହିନି; ଅନ୍ୟ କେତୋଟି କିମ୍ବଦନ୍ତୀ ପ୍ରସିଦ୍ଧ ସ୍ଥାନକୁ ନେଇ ତାଙ୍କର ଆଉ କେତୋଟି କାଳଜୟୀ ସୃଷ୍ଟି ମଧ୍ୟ ରହିଛି ।



# କିମ୍ବଦନ୍ତୀରେ କ୍ଷୀରଚୋରା ଗୋପୀନାଥ

ସଂସାରରେ କିଛି ସ୍ଥିର ନୁହେଁ; ସବୁ ଅନିତ୍ୟ, କ୍ଷୟଶୀଳ । କାଳର କରାଳଚକ୍ରରେ ସବୁ ନିଷ୍ପେଷିତ । ଏଥିରୁ ଗୋଟିଏ ଛାଡ; ସେଇଟି କୀର୍ତ୍ତି । ପ୍ରାଗ୍ ଐତିହାସିକ କାଳରେ ବହୁ ଯଶସ୍ୱୀ ବୀର, ତ୍ୟାଗୀ, ସନ୍ନ୍ୟାସୀ, ରାଜା ମହାରାଜାମାନେ ଅକ୍ଷୟ କିର୍ତ୍ତିର ଅଧିକାରୀ ଥିଲେ । ଇତିହାସରେ ମଧ୍ୟ ଏଭଳି ନଜିରର ଅଭାବ ନାହିଁ । ଅନୁରୂପ ଭାବେ ପୁରାଣ ସାହିତ୍ୟରେ ବହୁ କାଳ୍ପନିକ ଚରିତ୍ର; ଏପରିକି ସ୍ୱୟଂ ପରଂବ୍ରହ୍ମଙ୍କ ବିଭିନ୍ନ ଅବତାରରେ ପ୍ରଦର୍ଶିତ ଅଲୌକିକ ବିଭୂତିମାନ ଚିତ୍ରିତ । ଏହା ବେଶ୍ ମନୋରଂଜନଧର୍ମୀ । ସାଧାରଣ ଜନତା ଅତି ସହଜରେ ଏଗୁଡିକୁ ଗ୍ରହଣ କରିନେଇଥାନ୍ତି । ବିଶେଷକରି ପ୍ରସିଦ୍ଧ ମଠ, ପୀଠ, ମନ୍ଦିର ସମ୍ବନ୍ଧୀୟ କିମ୍ବଦନ୍ତୀମାନ ଜନଶ୍ରୁତିରେ ଜୀବନ୍ତ ରହେ କାଳ କାଳକୁ । ଏଗୁଡିକର ପୃଷ୍ଠଭୂମିରେ ଐତିହାସିକ ତଥ୍ୟମାନ ରହିଛି । ଏହା ସତ୍ତ୍ୱେ; କିମ୍ବଦନ୍ତୀ ଗୁଡିକୁ ସମାଜ ଆଦରିନେଇଛି ଅନାୟାସରେ । ସେହିଭଳି ଏକ ବଳିଷ୍ଠ କିମ୍ବଦନ୍ତୀ ରହିଛି ବାଲେଶ୍ୱରଠାରେ ଥିବା ବିଷ୍ଣୁମନ୍ଦିର 'କ୍ଷୀରଚୋରା ଗୋପୀନାଥ'ଙ୍କ ସଂପର୍କରେ । ସେହି ଅମଳିନ କଥାଟି ପ୍ରତିପାଦିତ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ 'କ୍ଷୀରଚୋରା ଗୋପୀନାଥ'ଶୀର୍ଷକ ରଚନାରେ । ତ୍ରେତା ଯୁଗରେ ଇକ୍ଷ୍ୱାକୁ ବଂଶଧର, ମର୍ଯ୍ୟାଦାବନ୍ତ ପୁରୁଷ ପ୍ରଭୁ ଶ୍ରୀରାମଚନ୍ଦ୍ର ଆଙ୍କିଥିଲେ ଗୋପୀନାଥଙ୍କ ମୂର୍ତ୍ତିଟି ଖଣ୍ଡେ ପ୍ରସ୍ତର ଗାତ୍ରରେ । ସେହି ମୂର୍ତ୍ତିଟି ଏବେ କ୍ଷୀରଚୋରା ଗୋପୀନାଥ ଭାବେ ଉପାସିତ । ଏହା କିମ୍ବଦନ୍ତୀଟିର ସାରକଥା ।

ବାଲେଶ୍ୱର ରେଳଷ୍ଟେସନ୍ ଠାରୁ ମାତ୍ର ୫ ମାଇଲ୍ ଦୂରରେ ରେମୁଣା । ସେଠାରେ ସ୍ଥାପିତ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର । ଗଙ୍ଗବଂଶୀ ନରପତି ଦ୍ୱିତୀୟ ନରସିଂହ ଦେବ (ଖ୍ରୀ.ଅ ୧୨୭୮- ୧୩୦୭) ମନ୍ଦିରଟିକୁ ନିର୍ମାଣ କରିଥିଲେ । ଉତ୍କଳରେ ଗଙ୍ଗ ରାଜତ୍ୱର ଅବଧି ଖ୍ରୀ.ଅ ୧୧ଶ ଶତାବ୍ଦୀରୁ ୧୫ଶ ଶତାବ୍ଦୀ ଯାଏଁ । ପ୍ରଥମ ଅବସ୍ଥାରେ

ଗଙ୍ଗରାଜାମାନେ ଥିଲେ ଶୈବ ଉପାସକ; ମାତ୍ର ବିଶିଷ୍ଟ ବୈଷ୍ଣବ ଧର୍ମପ୍ରଚାରକ ରାମାନୁଜଙ୍କ ପୁରୀ ରହଣି ସମୟରେ ସେମାନଙ୍କ ଧର୍ମୀୟ ଚେତନା ସହ .ବୈଷ୍ଣବ ଧର୍ମଦର୍ଶନ ବିଜଡିତ ହେଲା । ରାଜା ଚୋଡଗଙ୍ଗ ଦେବ ବୈଷ୍ଣବ ଧର୍ମ ଗ୍ରହଣ କଲେ । ସାରା ଉତ୍କଳ ଖଣ୍ଡରେ ବିଷ୍ଣୁମନ୍ଦିରମାନ ସ୍ଥାପିତ ହେଲା । ଏହାର କର୍ଣ୍ଣଧାର ହେଲେ ସ୍ୱୟଂ ଚୋଡଗଙ୍ଗ । ମନ୍ଦିର ଗାତ୍ର ମାନଙ୍କରେ ବିଷ୍ଣୁଙ୍କ ଦଶାବତାର ଚିତ୍ରମାନ ଖୋଦିତ ହେଲା । ମନ୍ଦିରରେ ବିଷ୍ଣୁ ମୂର୍ତ୍ତି ପୂଜା ପାଇଲେ । ଖ୍ରୀ.ଅ ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବ ରଚନା କଲେ ରାଧାକୃଷ୍ଣ ପ୍ରେମ- ଲୀଳା ଭିତ୍ତିକ ଗୀତଗୋବିନ୍ଦ । ଏହାର କଳିତ, ଲଳିତ, ମଧୁର ପଦ୍ୟାବଳୀ ବିଗଳିତ କରିଦେଲା ଭକ୍ତ ପ୍ରାଣକୁ । ବୈଷ୍ଣବ ଧର୍ମରେ ପ୍ରେମଭକ୍ତି ମାର୍ଗ ପ୍ରସିଦ୍ଧି ଲାଭ କଲା । ପ୍ରଭୁ ଶ୍ରୀ ଚୈତନ୍ୟ ଥିଲେ ପ୍ରେମଭକ୍ତିର ଦୃଢ ସମର୍ଥକ । ଏହି ଧର୍ମର ପ୍ରଚାର, ପ୍ରସାର ପାଇଁ ସେ ନଦିଆ ନବଦ୍ୱୀପରୁ ପୁରୀ ଆଗମନ କଲେ (୧୫୦୯-୧୫୧୦ ଖ୍ରୀ.ଅ) । ବୈଷ୍ଣବ ଧର୍ମ ଦର୍ଶନରେ ଘଟିଲା ଯୁଗାନ୍ତକାରୀ ପରିବର୍ତ୍ତନ । ରାଧାକୃଷ୍ଣ ପ୍ରେମତତ୍ତ୍ୱ ଭିତ୍ତିକ ଏହି ଧର୍ମଧାରା ଗୌଡୀୟ ବୈଷ୍ଣବ ଧର୍ମ ଭାବେ ଅଭିହିତ ହେଲା । ଉତ୍କଳର ରାଜା ପ୍ରତାପରୁଦ୍ର ଦେବ, ତାଙ୍କ ପ୍ରଧାନ ସେନାପତି ରାୟ ରାମାନନ୍ଦ ପ୍ରେମ ଧର୍ମକୁ ଗ୍ରହଣ କଲେ । ଗୌଡୀୟ ବୈଷ୍ଣବ ଧର୍ମ ରାଜାନୁକମ୍ପା ଲାଭ କଲା । କହିବା ବାହୁଲ୍ୟ ଯେ, ଏହାର ମଧ ଦ୍ରୁତ ପ୍ରଚାର ପ୍ରସାର ଘଟିଲା ଓଡିଶାରେ । ପ୍ରେମ ଧର୍ମରେ ଗୋପୀଜନ ବଲ୍ଲଭ ଶ୍ରୀକୃଷ୍ଣଙ୍କୁ ପ୍ରାଧାନ୍ୟ ଦିଆଯିବା ସହ ତାଙ୍କୁ ଗୋପୀନାଥ ଭାବେ ଗ୍ରହଣ କରାଗଲା ।

ଓଡିଶାର ଉପକୂଳ ଅଞ୍ଚଳରେ କେତେକ ବିଷ୍ଣୁମନ୍ଦିର ପରିଦୃଷ୍ଟ । ତନ୍ମଧ୍ୟରୁ ଦୟାନଦୀ ତଟବର୍ତ୍ତୀ ବାଲିଅନ୍ତା, ଭୁବନେଶ୍ୱର ପାଖ ହରିପୁର, ଭଦ୍ରକର ମାଳତୀରା, ପୁରୀର ସତ୍ୟବାଦୀ, ପୁରୀ ଦାଣ୍ଡମୁକୁନ୍ଦପୁର ଶାସନରେ ସ୍ଥାପିତ ଗୋପୀନାଥ ମନ୍ଦିର ପ୍ରଭୃତି ବୈଷ୍ଣବୀୟ ତୀର୍ଥକ୍ଷେତ୍ର ରୂପେ ପ୍ରସିଦ୍ଧ । କିନ୍ତୁ ରେମୁଣା କ୍ଷୀରଚୋରା ଗୋପୀନାଥଙ୍କ ଏତାଦୃଶ ନାମକରଣ ବେଶ୍ କୌତୂହଳପ୍ରଦ । ଏଠାକାର ବିଗ୍ରହ ସ୍ଥାପନାକୁ ନେଇ କିମ୍ବଦନ୍ତୀ ମଧ ରୁଚିପ୍ରଦ । କଥାଟି ତ୍ରେତୟା ଯୁଗର । ଶ୍ରୀରାମଚନ୍ଦ୍ର, ଅନୁଜ ଲକ୍ଷ୍ମଣ; ସହଧର୍ମିଣୀ ସୀତାଙ୍କ ସହ ବନବାସୀ ଜୀବନ ବିତାଇଲେ । ଉଟଜ କରି ଅବସ୍ଥାନ କଲେ ଚିତ୍ରକୂଟ ପର୍ବତରେ । ଅବତାରୀ ପୁରୁଷ ଶ୍ରୀରାମଚନ୍ଦ୍ରଙ୍କ ଅଭ୍ୟର୍ଥନା ପାଇଁ ସଜବାଜ ହେଲା ପ୍ରକୃତିରାଣୀ । ଆସିଲେ ବସନ୍ତରାଜା । ପରିବେଶ ସୁଗନ୍ଧିତ । ମନ୍ଦ, ଗନ୍ଧବାହ ବାଣ୍ଟିଲା ବନ୍ୟକୁସୁମ ନିଚୟର ସୁବାସ । କୋକିଳବଧୂ ଆମ୍ର ଶାଖାରେ ବସି ଗାଇଲା ପଞ୍ଚମ ରାଗରେ । ନବୀନ କିଶଳୟରେ ଆବୃତ ବନସ୍ପତିବୃନ୍ଦ ଅପୂର୍ବ ଶୋଭା ବିମଣ୍ଡିତ ହେଲେ । ଧରିତ୍ରୀରାଣୀ ନୂତନ ବସ୍ତ୍ର ପରିହିତା । ଏହି ମନୋରମ ପରିବେଶ ଜୀବନର ଆନନ୍ଦ ବର୍ଦ୍ଧନ କଲା । ରାମ, ସୀତା ବାହାରିଲେ ବନ ଭ୍ରମଣରେ । ଉପବେସନ କଲେ ପ୍ରସ୍ତର ଖଣ୍ଡରେ । ସୀତା ଥିଲେ ବିଷଣ୍ଣା କାରଣ ଏ

ଅଳୀକ ଶୋଭା ସୌନ୍ଦର୍ଯ୍ୟ, ହଜିଯିବ ମୁହୂର୍ତ୍ତରେ, ଯେମିତି ହଜିଲା ପୂରିଲା ଜୀବନ । ରାମଚନ୍ଦ୍ର ସୀତାଙ୍କ ଭ୍ରମ ଦୂରକଲେ, "ପ୍ରିୟେ ! ଜଡ଼ ଦେହ ରହିବ ନାହିଁ ସତ୍ୟ! କିନ୍ତୁ ଅବିନଶ୍ୱର ଆତ୍ମା କେଉଁଆଡେ ଯିବ ନାହିଁ । ଆମ୍ଭେମାନେ ଯେ କୌଣସିଠାରେ ଜନ୍ମଗ୍ରହଣ କଲେ ସୁଦ୍ଧା ଆକାଙ୍କ୍ଷାପୂର୍ଣ୍ଣ ଆତ୍ମା ଆକାଂକ୍ଷିତ ପ୍ରତିଧାବମାନ ହେବ । ମୁଁ ଦୁଷ୍ଟଙ୍କର ଦମନ, ଶିଷ୍ଟଙ୍କର ପାଳନାର୍ଥେ ପ୍ରତି ଯୁଗରେ ସମ୍ଭୂତ ହୁଏ । ଦ୍ୱାପରରେ ପୃଥିବୀ ଭାର ହରଣ, ଧର୍ମରାଜ୍ୟ ସଂସ୍ଥାପନାର୍ଥେ ମୁଁ ଅବତାର ଗ୍ରହଣ କରିବି ।" ରାମଚନ୍ଦ୍ର ଦ୍ୱାପରରେ ହେବେ ଶ୍ରୀକୃଷ୍ଣ, ସୀତା ଜନ୍ମ ନେବେ ବୃଷଭାନୁ ଗୃହରେ; ପରିଚିତ ହେବେ ରାଧା ନାମରେ । ବ୍ରଜଗୋପୀମାନେ ଶ୍ରୀକୃଷ୍ଣଙ୍କଠାରେ ଆତ୍ମସମର୍ପଣ ପୂର୍ବକ ନିଷ୍କାମ ଭାବେ ତାଙ୍କ ସେବା କରିବେ । ଶ୍ରୀକୃଷ୍ଣ ଗୋପୀନାଥ ଭାବେ ଅଭିହିତ ହେବେ- ଏହି କଥା ସବୁ ଶ୍ରୀରାମଚନ୍ଦ୍ର ପ୍ରକାଶ କଲେ । ତତ୍ପରେ ବସିଥିବା ପ୍ରସ୍ତର ଖଣ୍ଡରେ ଶରାଗ୍ରଭାଗ ଦ୍ୱାରା ଆଙ୍କିଲେ କୋଟି କାମ ରୂପଜିଣା ଗୋପୀନାଥ ମୂର୍ତ୍ତିଟିଏ । ତାହା ସଂଦର୍ଶନ କରନ୍ତେ ସୀତା ହେଲେ ମୂର୍ଚ୍ଛିତା । ରାମଚନ୍ଦ୍ର ହତଚେତା ସୀତାଙ୍କୁ ନେଇ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ । ପଡିରହିଲା ସେହି ମୂର୍ତ୍ତିଟି କାହିଁ କେତେକାଳ ।

ମୁସଲମାନ ରାଜତ୍ୱକାଳ । ଏକଦା ଜଣେ ହିନ୍ଦୁରାଜା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ବାହାରିଲେ । ରାସ୍ତା ପାର୍ଶ୍ୱରେ ଦେଖିଲେ ଦେବମୂର୍ତ୍ତିଟିକୁ । ଭକ୍ତିପୂତ ପ୍ରଣିପାତପୂର୍ବକ ଆପଣାର ମନସ୍କାମନା ପୂର୍ଣ୍ଣ ପାଇଁ ପ୍ରାର୍ଥନା କଲେ । ରାଜାଙ୍କ କାର୍ଯ୍ୟ ସିଦ୍ଧି ହେଲା । ଫେରିବା ସମୟରେ ସାଥିରେ ଆଣିଲେ ସେହି ଦେବମୂର୍ତ୍ତିକୁ । ରେମୁଣାଠାରେ ମୂର୍ତ୍ତିଟି ଏପରି ଭାରି ବୋଧ ହେଲା ଯେ ରାଜାଙ୍କ ପକ୍ଷେ ତାହା ଆଗକୁ ନେବା ସମ୍ଭବନଥିଲା । ସବୁ ସେହି ଇଚ୍ଛାମୟଙ୍କର ଇଚ୍ଛା । ସେହିଠାରେ ମୂର୍ତ୍ତିଟି ଥୋଇଦେଇ ରାଜା ପ୍ରସ୍ଥାନକଲେ । କାଳକ୍ରମେ ରେମୁଣାଗ୍ରାମବାସୀ ମନ୍ଦିରଟିଏ ନିର୍ମାଣକରି ଦେବତାଙ୍କ ପୂଜାର୍ଚ୍ଚନା କଲେ । ମାଧବାନନ୍ଦପୁରୀ ନାମକ ଜଣେ ପରମ ବୈଷ୍ଣବଙ୍କୁ ସ୍ୱପ୍ନାଦେଶ ହେଲା । ସେ ଶ୍ରୀକ୍ଷେତ୍ରରୁ କୁଙ୍କୁମ ଆଣି ଦିଅନ୍ତି ଅଙ୍ଗଲାଗି କଲେ । ମନ୍ଦିର ପୂଜକ ମାନେ ଏହାକୁ ସହଜରେ ଗ୍ରହଣ କରିନଥିଲେ । ମାଧବାନନ୍ଦଙ୍କୁ ମଧ୍ୟ ସମୋଚିତ ଆଦର ଅଭ୍ୟର୍ଥନା ପ୍ରଦାନ କରାଗଲା ନାହିଁ । ମନସ୍ତାପ, ଅନ୍ତର୍ଦ୍ୱନ୍ଦ୍ୱ, ଉପବାସରେ ତାଙ୍କ ରାତି ବିତିଲା । ଭାବଗ୍ରାହୀ ପ୍ରଭୁ ଭକ୍ତର ମନକଥା ବୁଝିଲେ । ବ୍ରାହ୍ମଣ ବେଶରେ ଆସି ଗୋଟେ ସୁନା ତାଟିଆରେ କ୍ଷୀର ପରଶିଦେଲେ ମାଧବାନନ୍ଦଙ୍କୁ । ରାତି ପାହିଲା, ମନ୍ଦିରରୁ ସୁନା ତାଟିଆ ଚୋରି କଥାଟି ତୁଣ୍ଡରୁ ତୁଣ୍ଡ ପ୍ରସରିଗଲା । ନବାଗତ ଅତିଥିଙ୍କ ଶେଯ ପାଖରେ ସଙ୍ଗୁଡି ତାଟିଆଟିକୁ ଟହଲିଆ ଦେଖିଲା । ମାଧବାନନ୍ଦଙ୍କୁ ଚୋର, ଡକାଏତ ଆଖ୍ୟା ଦିଆଗଲା । ଚାଲିଲା ଅକଥନୀୟ ଅତ୍ୟାଚାର । ହେଲା ବର୍ଷଣ,- ଅଜସ୍ର ବର୍ଷଣ- ଶ୍ରାବଣର ଧାରାରେ ବିଧା, ଚାପୁଡା ବୃଷ୍ଟିହେଲା । ଏଥିସହିତ ଭୟାନକ ଗର୍ଜନ

ତର୍ଜନ କରି  ବୈଷ୍ଣବଙ୍କ ସପ୍ତପୁରୁଷର ପିଣ୍ଡଦାନ କରାଗଲା । ଭାଗ୍ୟକୁ ବୈଷ୍ଣବ ବୋଲି ଗୋଇଠାରୁ ରକ୍ଷା ମିଳିଲା ।ବଡପୂଜାରୀ ଥିଲେ ଦୟାବନ୍ତ । ମାଧବାନନ୍ଦଙ୍କ ଠାରୁ ସମସ୍ତ ବୃତ୍ତାନ୍ତ ଶୁଣିଲେ; ମାତ୍ର ତାହା ବିଶ୍ୱାସଯୋଗ୍ୟ ନଥିଲା । ସୁନାତାଟିଆଟି ମିଳିଯାଇଥିବାରୁ ଅତିଥିଙ୍କୁ ଅଧିକ ନିର୍ଯ୍ୟାତନା ନଦେବାପାଇଁ ସେ ନିର୍ଦ୍ଦେଶ ଦେଲେ । ସେଦିନ ନିଶାର୍ଦ୍ଧ, ବଡ ପୂଜାରୀ ଗଭୀର ନିଦ୍ରାରେ । ସ୍ୱପ୍ନାଦେଶ ହେଲା, "ଯେଉଁ ବୈଷ୍ଣବଙ୍କୁ ତୁମେ ଚୋର ବୋଲି ଏତେ ଅପମାନ ଦେଇ, ସେ ମୋର ପରମଭକ୍ତ; ତୁମ୍ଭେ ତାହାଙ୍କୁ ଅବହେଳାକରି ଉପାସ ପକାଇଥିଲ । ମୁଁ ତା' ସହିନପାରି ସେ କ୍ଷୀରତାଟିଆଟି ନେଇ ଦେଇଆସିଲି; ଅତଏବ ମୋର ଭକ୍ତ ଚୋର ନୁହେଁ, ମୁଁ ଚୋର ।" ବଡିସକାଳୁ ଖୋଜାପଡିଲା ମାଧବାନନ୍ଦଙ୍କୁ; କିନ୍ତୁ ତାଙ୍କ ସାକ୍ଷାତ ମିଳିଲାନି । ଏଣିକି ଠାକୁର ହେଲେ କ୍ଷୀରଚୋରା ଗୋପୀନାଥ । ଏହି କଥା। କିମ୍ବଦନ୍ତୀଟିର ମୁଖ୍ୟାଂଶ ।

ଗୋପୀନାଥଙ୍କ ସହ ଆଉ ଏକ କିମ୍ବଦନ୍ତୀ ବିଜଡିତ । ବିଖ୍ୟାତ ଗୋପୀ ବଲ୍ଲଭପୁର ଗୋସ୍ୱାମୀ ବଂଶର ଆଦିପୁରୁଷ ରସିକାନନ୍ଦ ମହାପ୍ରଭୁ ଏକଦା ଶ୍ରୀଜୀଉଙ୍କର ଦର୍ଶନ କରୁଁକରୁଁ ଅତିଶୟ ପ୍ରେମାବିଷ୍ଟ ହୋଇପଡିଲେ । ଭକ୍ତିରେ ଗଦ୍‌ଗଦ୍ ହୋଇ ଆଲିଙ୍ଗନ କଲେ ଗୋପୀନାଥଙ୍କୁ । ସଙ୍ଗେ ସଙ୍ଗେ ତାଙ୍କ ଦେହରେ ବିଲୀନ ହୋଇଗଲେ । କେବଳ ବାହାରକୁ ଦିଶୁଥିଲା ରସିକାନନ୍ଦଙ୍କ ପିନ୍ଧାକୁଞ୍ଚ କାନିର ଗୋଟିଏ ଅଂଶ ।  ଏମନ୍ତ ଆଶ୍ଚର୍ଯ୍ୟିତ କଥା ଦେଖି ତାଙ୍କ ସହ ଆସିଥିବା ବେହେରା, ବାରିକମାନେ ପ୍ରାଣତ୍ୟାଗକଲେ । ସେହିଦିନଠାରୁ ସେମାନଙ୍କ ସମାଧି ମନ୍ଦିର ପ୍ରାଙ୍ଗଣରେ ଅଛି ।  ଉପର୍ଯ୍ୟୁକ୍ତ କିମ୍ବଦନ୍ତୀରେ ବର୍ଣ୍ଣିତ ମାଧବାନନ୍ଦ ପୁରୀଙ୍କ ସମ୍ପର୍କିତ ସୂଚନା କେତେକ ସାହିତ୍ୟ କୃତିରେ ପରିଲକ୍ଷିତ । କୃଷ୍ଣଦାସ କବିରାଜ ଚୈତନ୍ୟ ଚରିତାମୃତରେ ସେହି ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି, " ମାଧବାନନ୍ଦ ପୁରୀ/ ଯାର ଜନ୍ୟ ଗୋପୀନାଥ କ୍ଷୀର କୈଲ ଚୂରୀ ।" ନରୋତ୍ତମ ଦାସ ମଧ ଠାଏଁ ଲେଖିଲେ, "ଜୟ ଜୟ ଗୋପୀନାଥ ପ୍ରଭୁ ପ୍ରାନ ମୋର/ପୁରୀ ଗୋସାଇଁ ଲାଗିଯାର ନାମ କ୍ଷୀର ଚୋର ।"

କ୍ଷୀରଚୋରା ଗୋପୀନାଥ ବଡ ପ୍ରତ୍ୟକ୍ଷ ଦେବତା । ବାଲେଶ୍ୱର ଅଞ୍ଚଳର ଲୋକେ ଏହାଙ୍କୁ ଅତ୍ୟନ୍ତ ପ୍ରଭାବଶାଳୀ ଦେବତାରୂପେ ମାନ୍ୟ କରନ୍ତି । ପୁରୀଯାତ୍ରା କାଳରେ ଶ୍ରୀ ଚୈତନ୍ୟ ଦେବ ଗୋପୀନାଥଙ୍କୁ ଦର୍ଶନ କରି ଅତ୍ୟନ୍ତ ଭାବବିହ୍ୱଳ ହୋଇଯାଇଥିଲେ । ଠାକୁରଙ୍କର  ପ୍ରିୟ ନୈବେଦ୍ୟ କ୍ଷୀର  ଅତ୍ୟନ୍ତ ଉପାଦେୟ । ପୁରୀଯାତ୍ରୀ ବଙ୍ଗାଳୀମାନଙ୍କ ମଧ୍ୟରୁ ଅନେକ କ୍ଷୀରଚୋରା ଗୋପୀନାଥଙ୍କ ଦର୍ଶନ ପାଇଁ ରେମୁଣା ଯାଆନ୍ତି । ଏହା ଏକ ପର୍ଯ୍ୟଟନ କ୍ଷେତ୍ରର ମାନ୍ୟତା ପାଇଛି । ଏହି ପ୍ରସିଦ୍ଧ ବିଷ୍ଣୁପୀଠକୁ ନେଇ ଇତିହାସ ଜୀବନ୍ତ; କିମ୍ବଦନ୍ତୀ ମଧ ଅତୀବ ମଞ୍ଜୁଳ  ।



# ଦେଶ ହିଁ ମୋର ମା' - ମହାପ୍ରାଣ ଗୋପବନ୍ଧୁ

ପ୍ରବୃତ୍ତି ବଡ ଭୟାନକ; ଏହାର ବଶବର୍ତ୍ତୀ ହେଲେ ମାନବଜାତି ପଶୁତ୍ୱ ଆଡେ ମୁହାଁଏ, ଦେଶର ଅଧୋପତନ ଘଟେ, ମାନବିକତାବାଦରେ କଳଙ୍କ ଲାଗେ । ଜାତିର ଏପରି ଘଡିସନ୍ଧି ମୁହୂର୍ତ୍ତ ଆସେ, ଯେତେବେଳେ ଜଣେ ଜଣେ ମାନବ ଦେହଧାରୀ ଦେବତା ଭୂପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ସେମାନେ ମାନବକୁ କର୍ତ୍ତବ୍ୟର ବାଟ ଦେଖାନ୍ତି; ନଚେତ୍ ମଣିଷ ଦିନେ ବର୍ବର ପଶୁରେ ପରିଣତ ହୋଇଯାଇଥାନ୍ତା । ଏଭଳି ଯୋଗଜନ୍ମା ମହାପୁରୁଷମାନେ ଗୋଟେ ଗୋଟେ ଦେଶ ବା ଜାତିକୁ ଧ୍ୱଂସ ମୁଖରୁ ରକ୍ଷା କରିଦିଅନ୍ତି, ଜାତି ପ୍ରାଣରେ ଅମୃତଧାରା ବୁହାଇ ଦିଅନ୍ତି । ସେମାନଙ୍କଠାରୁ ଦେଶବାସୀ ଅଦମ୍ୟ ସାହାସ, ତ୍ୟାଗ , ତିତିକ୍ଷା, ଦେଶପ୍ରେମ ଆଦି ମହନୀୟ ଗୁଣାବଳୀ ଶିକ୍ଷା କରନ୍ତି, ଜନନୀ ଜନ୍ମଭୂମି ନିମିତ୍ତ ଆତ୍ମୋତ୍ସର୍ଗ ପାଇଁ ଜନତା ଜନାର୍ଦ୍ଦନ ପ୍ରେରଣା ପାଆନ୍ତି । ଜାତି ଜୀବନ୍ତ, ଉଦ୍ଦୀପ୍ତ ହୋଇ ସନ୍ମାର୍ଗରେ ଅଗ୍ରସର ହୁଏ । ସେହିଭଳି ଜଣେ ପ୍ରାତଃ ସ୍ମରଣୀୟ ମହାପୁରୁଷ ଗୋପବଂଧୁ ଦାସ । ଯଥାର୍ଥରେ ସେ ପୁଣ୍ୟଶ୍ଳୋକ, ଦୀନ ଦରିଦ୍ରର ବଂଧୁ, ମହାପ୍ରାଣ, ଉତ୍କଳମଣି । ଆପଣାର ତ୍ୟାଗପୂତ ଜୀବନ, ଦରିଦ୍ର ନାରାୟଣ ସେବା ଆଦି ସଦ୍‌ଗୁଣାବଳୀ ତଥା ଜାତୀୟ ମୁକ୍ତି ସଂଗ୍ରାମରେ ଉଲ୍ଲେଖନୀୟ ଅବଦାନ ପାଇଁ ସେ ଚିରସ୍ମରଣୀୟ । ଗୋପବଂଧୁ ମଣିଷ ପରି ମଣିଷ । ପବିତ୍ର କର୍ମମୟ ଜୀବନ ତାଙ୍କର 'ଗୋପବଂଧୁ' ବା 'ଧରିତ୍ରୀର ବଂଧୁ' ନାମକୁ ସାର୍ଥକ କରିଛି । ସେହି ମହାମାନବଙ୍କ ଅମ୍ଳାନ ପ୍ରତିଭାକୁ ଭିତ୍ତିକରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ପ୍ରବନ୍ଧ 'ମହାପ୍ରାଣ ଗୋପବଂଧୁ' । ଏଥିରୁ ସୁଧୀ ପାଠକେ ପାଇଥାନ୍ତି ଉତ୍କଳମଣିଙ୍କ ସାମଗ୍ରିକ ଜୀବନର ସଂକ୍ଷିପ୍ତ ରୂପଚିତ୍ର । ପ୍ରବନ୍ଧଟିର ଶୈଳିକ ପରିପାଟୀ ଖୁବ୍ ମନଛୁଆଁ ।

୧୮୭୬ ମସିହା, ଅକ୍ଟୋବର ୯ ତାରିଖ । ପୁରୀ ଜିଲ୍ଲା ସୁଆଣ୍ଡୋ ଗ୍ରାମରେ ଜନ୍ମନେଲେ ଶିଶୁଟିଏ । ପିତା ଦୈତ୍ୟାରି ଦାସ, ମାତା ସ୍ୱର୍ଣ୍ଣମୟୀ ନାମ ଦେଲେ ଗୋପବଂଧୁ । ବିଧିର ବିଧାନ ବିଚିତ୍ର । ଶୈଶବରୁ ଗୋପବଂଧୁ ହେଲେ ମାତୃହରା । ଏଣିକି ଲାଳନ ପାଳନ ଦାୟିତ୍ୱ ପିତା ଦୈତ୍ୟାରିଙ୍କ ଉପରେ । ସେ କାଳର ଶିକ୍ଷା ବ୍ୟବସ୍ଥା ଅନୁଯାୟୀ ଗୋପବଂଧୁଙ୍କ ପାଠପଢା ଗାଁ ଚାଟଶାଳୀରୁ । ତଦାନୀନ୍ତନ ଖଡିପାଠ, ତାଳପତ୍ର ପୋଥି ଲିଖନ, ଅଙ୍କକଷା ପ୍ରଭୃତି ଶେଷ ହେଲା । ପୁରୀ ବ୍ରାହ୍ମଣ ଶାସନର ଅନ୍ୟ ପିଲାମାନଙ୍କ ପରି ଗୋପବଂଧୁଙ୍କ ପାଠ ସେତିକିରେ ସରିଥାନ୍ତା; ମାତ୍ର ତାଙ୍କ ପିତା ଥିଲେ ସୁଶିକ୍ଷିତ । ଗତାନୁଗତିକତା ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ନଥିଲା । ସେ ଗୋପବଂଧୁଙ୍କ ଉଚ୍ଚ ଶିକ୍ଷା ପାଇଁ ଯତ୍ନଶୀଳ ହେଲେ । ପୁରୀ ଜିଲ୍ଲା ସ୍କୁଲରେ ପାଠ ଶେଷ କରି ରେଭେନ୍ସା କଲେଜରୁ ବି.ଏ (୧୯୦୪), କଲିକତାରୁ ଆଇନ୍ ପାଶ୍ କଲେ (୧୯୦୬) ମେଧାବୀ ଗୋପବଂଧୁ । ସେ ସମୟରେ ଇଂରାଜୀ ପାଠୁଆଙ୍କ ପାଇଁ ସରକାରୀ ଚାକିରିଟିଏ ଥିଲା ସହଜଲଭ୍ୟ । କିନ୍ତୁ ସ୍ୱାଧୀନଚେତା ଗୋପବଂଧୁ ବିଦେଶୀଙ୍କ ନିକଟରେ ଗୋଲାମଗିରିକୁ ପସନ୍ଦ କରିନଥିଲେ । ଆଇନ ପାଶ୍ ପରେ ସେ କଟକରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ଗୋପବଂଧୁ ବାଲ୍ୟ ବିବାହ କରିଥିଲେ । ତାଙ୍କ ଧର୍ମ ପତ୍ନୀଙ୍କ ଅକାଳ ବିୟୋଗ ଘଟିଲା । ସେ ପୁନରାୟ ଦାରପରିଗ୍ରହ କରିନଥିଲେ । ସତେ ଯେମିତି ପତ୍ନୀ ବିୟୋଗଜନିତ ଅଘଟଣଟି ଥିଲା ଈଶ୍ୱରଙ୍କର ପରୋକ୍ଷ ଆଶୀର୍ବାଦ । ଏବେ ନାହିଁ ବଂଧନ ବା ସଂସାରର ଜଞ୍ଜାଳ ବେଢି । ଏଣିକି ଦେଶ ମାତୃକାର ସେବା । ଏଥିପାଇଁ ଗୋପବଂଧୁ ଯୋଜନା ପ୍ରସ୍ତୁତ କଲେ; ଦୀନ ଓଡିଆଙ୍କ ଦୁର୍ଦ୍ଦଶା ମୋଚନ, ଭାରତ ମାତାଙ୍କୁ ସ୍ୱାଧୀନ କରିବା ପାଇଁ ନେଲେ ବଜ୍ର ଶପଥ । ନିଜକୁ ସମର୍ପଣ କରିଦେଲେ ଭାରତ ମାତାଙ୍କ ପାଦ କମଳରେ । ଅନେକ ସମୟରେ ସେ ଭାବ ବିହ୍ୱଳ ହୋଇ କହୁଥିଲେ, "ମୋର ମା' ନାହିଁ - ଦେଶ ହିଁ ମୋର ମା'; ମୋର ପରିବାର ନାହିଁ - ଜାତି ହିଁ ମୋର ପରିବାର ।" ପରାଧୀନ ଭାରତ ବର୍ଷରେ ଏ ପ୍ରକାର ସାଧୁ ଚିନ୍ତନଟି ବିଶେଷ ଭାବରେ ଦେଖିବାକୁ ମିଳେ ନାହିଁ ।

ବିଭିନ୍ନ ଧର୍ମଗ୍ରନ୍ଥ, ବେଦ, ବେଦାନ୍ତ, ଉପନିଷଦ, ନାନାଦି ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ହିତୋପଦେଶ, ନୀତିବାଣୀ ପଠନରେ ବ୍ୟକ୍ତିର ଚଳଣି ମାର୍ଜିତ ହୁଏ, ଜୀବନ-ଗତିପଥ ବଦଳିଯାଏ, ଲକ୍ଷ୍ୟ ଏକ ନିର୍ଣ୍ଣାୟକ ମୋଡ ନିଏ । ବିଶ୍ୱର ବହୁ ମନୀଷୀଙ୍କ କ୍ଷେତ୍ରରେ ଏହା ପରିଲକ୍ଷିତ । ଗୋପବଂଧୁ ମଧ୍ୟ ଏଥିରୁ ବାଦ ପଡିନାହାଁନ୍ତି । ସେ

ବାଲ୍ୟାବସ୍ଥାରୁ ସ୍ୱୀୟ ଗୃହ ଦେବତାଙ୍କ ସମକ୍ଷରେ ଜଗନ୍ନାଥ ଦାସଙ୍କ ଭାଗବତ ପାଠ କରୁଥିଲେ, ଭାଗବତର ଲଳିତ, ଗଭୀର ଅର୍ଥଯୁକ୍ତ ପଦାବଳୀଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ତନ୍ମଧରେ ହଜି ମଜ୍ଜିଯିବା ସହ ଏହାକୁ କଣ୍ଠସ୍ଥ କରି ଦେଇଥିଲେ । ସମ୍ଭବତଃ ଏହି ପ୍ରାଣସ୍ପର୍ଶୀ ରଚନା ଗୋପବଂଧୁଙ୍କ କୋମଳ ପ୍ରାଣକୁ ଦ୍ରବୀଭୂତ କରିଦେବା ସହ ଦେବତ୍ୱର ଉନ୍ମେଷ ଘଟାଇଲା ।

ଦରଦୀ ବଂଧୁ ଗୋପବଂଧୁ ଅସହାୟର ମନକଥାକୁ ପଢି ବୁଝିପାରୁଥିଲେ, ଦୁର୍ଗତ ମାନଙ୍କ ଦୁରବସ୍ଥା ତାଙ୍କୁ ମ୍ରିୟମାଣ କରୁଥିଲା; ଏଣୁ ସେମାନଙ୍କ ଦୁଃଖର ଲାଘବ ପାଇଁ ବ୍ରତୀ ହୋଇଥିଲେ । ସେ କଲିକତା ବା କୋଲକାତାରେ ଆଇନ୍ ପଢୁଥିବା ସମୟରେ ସେଠାକାର ପ୍ରବାସୀ ଓଡିଆ କୁଲିମାନଙ୍କର ଦୁଃଖ, ହତାଶକୁ ହୃଦୟଙ୍ଗମ କରିଥିଲେ, ସେମାନଙ୍କୁ ଏକଜୁଟ୍ କରିବାରେ ସଫଳ ହୋଇଥିଲେ । ଓଡିଆ ମାନଙ୍କ ମଧରେ ପ୍ରଥମକରି ମଧ ଜାଗରଣ ସୃଷ୍ଟି କରିଥିଲେ ।

କର୍ମବାଦରେ ଗଭୀର ବିଶ୍ୱାସୀ ଥିଲେ ଗୋପବଂଧୁ । ଦେଶ-ହିତୈଷୀ ବ୍ରଜସୁନ୍ଦର ଦାସ ତାଙ୍କ ବଂଧୁ । ଦେଶର ଉନ୍ନତି କଳ୍ପେ ଦୁହେଁ ଆଗେଇଲେ, ଓଡିଆ ସାହିତ୍ୟର ବିକାଶ ପାଇଁ ମନୋନିବେଶ କଲେ । ଶବ୍ଦ କାଠିନ୍ୟ, ଅର୍ଥ ଗୌରବ, ଆଳଙ୍କାରିକତା ଆଦି ନାନାବିଧ କ୍ଲିଷ୍ଟତା ଓଡିଆ ସାହିତ୍ୟକୁ ସାଧାରଣ ପାଠକଠାରୁ ଦୂରେଇ ନେଇଯାଉଥିଲା- ଏକଥାକୁ ମର୍ମେ ମର୍ମେ ଅନୁଭବ କରିଥିଲେ ଗୋପବଂଧୁ । ସାହିତ୍ୟର ବହୁମୁଖୀ ଉନ୍ନତି ପାଇଁ ଦୁଇବଂଧୁ 'ମୁକୁର' ନାମକ ସାହିତ୍ୟ ପ୍ରତିକା ପ୍ରକାଶ କରିଥିଲେ । ଏଥିରେ ପ୍ରକାଶିତ ଲେଖା ସହଜ, ସରଳ, ବୋଧଗମ୍ୟ ହେଉଥିଲା, ଭାବସାରଲ୍ୟ ଉପରେ ମଧ ଗୁରୁତ୍ୱ ଆରୋପ କରାଯାଇଥିଲା । କହିବା ବାହୁଲ୍ୟ ଯେ ପତ୍ରିକାଟି ଓଡିଶାର ବହୁ ନବୀନ, ପ୍ରବୀଣ ସାହିତ୍ୟିକଙ୍କୁ ପ୍ରତିଷ୍ଠା ଦେଇଥିଲା । କ୍ରମେ ଗୋପବଂଧୁଙ୍କ ଗୁଣାବଳୀ ଚଉଦିଗକୁ ପ୍ରସରିଗଲା । ମୟୂରଭଞ୍ଜର ଗୁଣଗ୍ରାହୀ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ତାଙ୍କ ପ୍ରତିଭାରେ ମୁଗ୍ଧ ହେଲେ । ତାଙ୍କୁ ନିଜର ସରକାରୀ ଆଇନ୍ ପରାମର୍ଶଦାତା ରୂପେ ନିଯୁକ୍ତି ଦେବା ସହ ବହୁ ଜନହିତକର କାମ ହାତକୁ ନେଲେ । କିନ୍ତୁ ଏତାଦୃଶ ବଂଧନ ଗୋପବନ୍ଧୁଙ୍କ ଭଳି ମୁକ୍ତ ପୁରୁଷଙ୍କୁ ଆନନ୍ଦ ଦେଇନଥିଲା । ରାଜାଙ୍କର ଅକାଳ ବିୟୋଗ, ଚାକିରି ପାଇଁ ବିତୃଷ୍ଣା ଯୋଗୁଁ ସେ ସେହି ଗୁରୁ ଦାୟିତ୍ୱରୁ ଅବ୍ୟାହତି ନେଲେ; ସମସ୍ତ ପ୍ରକାର ଝଡ, ଝଞ୍ଜା, ବାଧା ବଂଧନକୁ ଅତିକ୍ରମ କରି ଜୀବନକୁ ଦେଶ ମାତୃକା ପାଇଁ ଉତ୍ସର୍ଗ କଲେ ।

ଜାତୀୟ ଶିକ୍ଷାର ପ୍ରସାର କ୍ଷେତ୍ରରେ ଗୋପବଂଧୁଙ୍କ ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ତତ୍‌କାଳୀନ ସରକାରୀ ଶିକ୍ଷା ଖସଡାରେ ବହୁ ତ୍ରୁଟି ଥିବା ସେ ଲକ୍ଷ୍ୟ କରିଥିଲେ । ଏହାର ଦୂରୀକରଣ ତଥା ଯୁବପିଢ଼ିଙ୍କୁ ଦେଶପ୍ରେମ, ଆଦର୍ଶ ବୋଧରେ ଅବଗାହିତ କରିବା ଲକ୍ଷ୍ୟ ନେଇ  ସତ୍ୟବାଦୀର ବକୁଳ ଛୁରିଆନା କୁଞ୍ଜରେ ବନ ବିଦ୍ୟାଳୟଟିଏ ପ୍ରତିଷ୍ଠାକଲେ । ସାହାଯ୍ୟ ନେଲେ କେତେକ ସମଧର୍ମୀ ଉଚ୍ଚଶିକ୍ଷିତ ଯୁବକଙ୍କର । ବିଦ୍ୟାଳୟ ଶିକ୍ଷା, ଦେଶାତ୍ମବୋଧ ଜନ୍ମାଇବା, ନୈତିକତା ଭିତ୍ତିରେ ଚରିତ୍ର ଗଠନ, ସହଜ ସରଳ, ନିରଳସ ଜୀବନ ଯାପନ ଆଦି ବିଷୟମାନ ସତ୍ୟବାଦୀ ବନବିଦ୍ୟାଳୟ ଶିକ୍ଷା ଖସଡାର ବିଶେଷ ବିଶେଷ ଦିଗ । ଶେଷରେ ଏହା 'ମଣିଷଗଢା କାରଖାନା'ରୂପେ ଅଭିହିତ ହେଲା ।  ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ମଧ୍ୟରୁ ଅନେକ ମୁକ୍ତି ସଂଗ୍ରାମରେ ଯୋଗଦେଇ ଦେଶପ୍ରେମ ବହ୍ନି ପ୍ରଜ୍ୱଳିତ କରିବାରେ ସହାୟକ ହେଲେ । ଏଠାକାର ଋଷିପ୍ରତୀମ ଗୁରୁମାନେ ମଧ୍ୟ ନିସ୍ୱାର୍ଥ, ନିଷ୍କଳଙ୍କ, ଉତ୍ସର୍ଗୀକୃତ ମୁକ୍ତି ସଂଗ୍ରାମୀଭାବେ ଅକ୍ଷୟ କୀର୍ତ୍ତିର ଅଧିକାରୀ ।

ଗୋପବଂଧୁଙ୍କ ସମାଜ ସେବାର ପଟାନ୍ତର ନାହିଁ । ଓଡିଶାର ବଢ଼ି, ମରୁଡି, ଦୁର୍ଭିକ୍ଷ ଭଳି ମହା ବିପତ୍ତିରେ ସେ ଅକୁଣ୍ଠ ଚିତ୍ତରେ ସେବାକାର୍ଯ୍ୟ ଚଳାଇଥିଲେ । ଭୟାନକ ବନ୍ୟା, କରାଳ ଦୁର୍ଭିକ୍ଷ ( ୧୯୦୭, ୧୯୧୯ ) ସମୟରେ  ନିଜର  ଛାତ୍ର, ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷକ, କେତେକ ଉତ୍ସାହୀ ଯୁବକଙ୍କୁ ନେଇ ଓଡିଶାର ଅଗମ୍ୟ ଗାଁ ଗହଳିରେ ଔଷଧ, ଚୂଡା, ଚାଉଳ, ଲୁଗାପଟା ଆଦି ବିତରଣ କରିଥିଲେ, ଲାଟ୍ ସଭାର ସଦସ୍ୟ ଥାଇ ସରକାରୀ ସାହାଯ୍ୟ ପାଇଁ ଦୃଢ଼ ଦାବି ଜଣାଇଥିଲେ । ଫଳରେ ସରକାରୀ, ବେସରକାରୀ ସ୍ତରରୁ ସାହାଯ୍ୟର ସୁଅ ଛୁଟିଲା । ସେ କ୍ଷୁଧାର୍ତ୍ତମାନଙ୍କ ପାଇଁ ଆରମ୍ଭ କଲେ ଦରିଦ୍ର ନାରାୟଣ ସେବା । ଗୋପବଂଧୁ ବୁଝିଥିଲେ ମାନବ ସେବା ହିଁ ମାଧବ ସେବା, ମାନବ ଧର୍ମ ହିଁ ମାଧବ ଧର୍ମ  ।

୧୯୨୧ ମସିହା । କଂଗ୍ରେସର ରଣଭେରୀ ବାଜି ଉଠିଲା ହିମାଳୟଠାରୁ କୁମାରୀକା ପର୍ଯ୍ୟନ୍ତ । ଗୋପବଂଧୁଙ୍କ ପ୍ରାଣ ଉଚ୍ଛନ୍ନ ହେଲା । ସତ୍ୟବାଦୀ ବନାଶ୍ରମ ତାଙ୍କୁ ଆଉ ବାନ୍ଧି ରଖିପାରିଲାନି । ସେ ଝାସ ଦେଲେ ଅସହଯୋଗ ମହାସଂଗ୍ରାମରେ, ତାଙ୍କ ପଛେ ପଛେ ଓଡିଆ ଜାତି ମଧ୍ୟ ଯୋଗ ଦେଲା । ଦୀନ ଓଡିଆଏ ପ୍ରମାଣିତ କରିଦେଲେ, ସେମାନେ ମୁକ୍ତି ସଂଗ୍ରାମରେ ପଛୁଆ ଅବା ହୀନ ନୁହନ୍ତି; ବରଂ ବହୁ ଆଗରେ  । ଓଡିଆଙ୍କର ଏହି ସଫଳତା ପଛରେ ଥିଲା ଗୋପବଂଧୁଙ୍କ ପ୍ରେରଣା ତଥା ଆଦର୍ଶ । ଯେଉଁ ସଂଗ୍ରାମୀ ଓଡିଆ ବୀରମାନେ ଏହି ସମୟରେ କାରାବରଣ କରିଥିଲେ ଗୋପବଂଧୁ ଥିଲେ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ।

ଗୋପବଂଧୁ ଜଣେ ସଫଳ ସାରସ୍ୱତ ସାଧକ । ତାଙ୍କ ଛାତ୍ର ଜୀବନର ଲେଖା "ଅବକାଶ ଚିନ୍ତା" ଅତି ଭାବମୟ ଲଳିତ କବିତା ପୁସ୍ତକ । 'ଧର୍ମପଦ', 'ବନ୍ଦୀର ଆତ୍ମକଥା' - ଏ ଦୁଇଟି ତାଙ୍କର ଅମ୍ଳାନ୍ ସାହିତ୍ୟ କୃତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ସତ୍ୟବାଦୀ', ସମ୍ବାଦପତ୍ର "ସମାଜ", ପ୍ରାକ୍ ସ୍ୱାଧୀନତା କାଳରେ ଜନତାଙ୍କୁ ଜଗାଇବା, ମତାଇବା, ତତାଇବାରେ ମୁଖ୍ୟ ଭୂମିକା ନେଇଥିଲା, ଅସହଯୋଗର ବାର୍ତ୍ତା ଘରେ ଘରେ ପହଁଞ୍ଚାଇ ଦେଇଥିଲା । ସ୍ନେହୀ ଗୋପବଂଧୁ ତାଙ୍କ ଶ୍ରଦ୍ଧାଶୀଳ ବ୍ୟବହାରରେ ଅନ୍ୟଙ୍କୁ ଆପଣାର କରିନେଉଥିଲେ । କାହାରି ଦୁଃଖକଷ୍ଟ ଦେଖିଲେ ତାଙ୍କ କଣ୍ଠରୋଧ ହୋଇଯାଉଥିଲା । ସେ ସମସ୍ତଙ୍କୁ ଆପଣାର କୁଟୁମ୍ବ ମନେକରୁଥିଲେ, ସେମାନଙ୍କ ଦୁର୍ଦ୍ଦଶାରେ କାନ୍ଦି ପକାଉଥିଲେ । ତାଙ୍କଭଳି ପୁଣ୍ୟାତ୍ମା, ଦରଦୀ ମଣିଷ ଏବେ ସମାଜରେ ଦୁଷ୍ପ୍ରାପ୍ୟ ।

କ୍ଷଣଜନ୍ମା ଗୋପବଂଧୁ, ଭାରତୀୟ ମୁକ୍ତି ସଂଗ୍ରାମ ଇତିହାସରେ ଓଡିଆ ମାନଙ୍କର ଗାର ପକାଇ, ଓଡିଆ ମାନଙ୍କୁ ତାଙ୍କର ଗନ୍ତବ୍ୟପଥ ନିର୍ଦ୍ଦେଶ କରି ଦେବଧାମକୁ ପ୍ରୟାଣ କଲେ (୧୯୨୮) । ଓଡିଶାର ମଉଡମଣି ଖସିପଡିଲା । ଏ ଜାତି ଯେତେଦିନ ଯାଏ ବିରାଜିତ ଥିବ, ଗୋପବନ୍ଧୁଙ୍କ ସ୍ମୃତି ତାର ମାନସପଟରୁ କେବେ ହେଁ ଲିଭିବ ନାହିଁ । ତାଙ୍କର ତ୍ୟାଗ, କର୍ମ ଉତ୍କଳ ମଣ୍ଡଳରେ ଅକ୍ଷୟ କୀର୍ତ୍ତି ସ୍ତମ୍ଭ ରୂପେ ବିରାଜମାନ ରହି ଅନାଗତ ଉତ୍କଳ ସନ୍ତାନଙ୍କୁ ଉଦ୍‌ବୁଦ୍ଧ କରୁଥିବ । " ମିଶୁ ମୋର ଦେହ ଏ ଦେଶ ମାଟିରେ/ ଦେଶବାସୀ ଚାଲି ଯାଆନ୍ତୁ ପିଠିରେ/ ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ/ ପୂରୁ ତହିଁ ପଡି ମୋର ମାଂସ, ହାଡ"- ଗୋପବଂଧୁଙ୍କ ଏହି ମର୍ମସ୍ପର୍ଶୀ ଉଦ୍‌ବୋଧନୀ ଗୀତିକା ଏ ଜାତିକୁ ସତତ ଜାଗରିତ କରିଥିବ । ମା' ମାଟି, ଦେଶ କୁ ପ୍ରାଣଠାରୁ ଅଧିକ ଭଲ ପାଉଥିବା ମହାପ୍ରାଣ ଗୋପବଂଧୁ ଏ ଜାତିର ଚିରପ୍ରଣମ୍ୟ ।



# ପାପ ପୁଣ୍ୟର ମହାଯାତ୍ରା

ମହତ ଶବ୍ଦର ବିକଳ୍ପ 'ମହା' । ଅନ୍ୟଶବ୍ଦ ସହ ଏହା ସଂଯୁକ୍ତ ହେଲେ ନାମ, ବସ୍ତୁ, ଘଟଣାର ଉତ୍କର୍ଷ ପ୍ରକାଶ ପାଏ । କେତେକ କ୍ଷେତ୍ରରେ ଏହାର ବିପରୀତ ଅର୍ଥ ମଧ୍ୟ ମିଳେ । ଯେମିତି ମହାକୃଷ୍ଣ (କାଳସର୍ପ), ମହାକାଳ (ଅନନ୍ତ), ମହାଜ୍ୟୋତିଷ (ମୂର୍ଖ, ଅଜ୍ଞ ଜ୍ୟୋତିଷ), ମହାତୀର୍ଥ (ମଶାଣି) , ମହାତୈଳ (ମଣିଷ ମୁଣ୍ଡର ବସା), ମହାପଣ୍ଡିତ (ବ୍ୟଙ୍ଗାର୍ଥେ ମୂର୍ଖ), ମହାଶଙ୍ଖ (ମଣିଷ ମୁଣ୍ଡର ଖପୁରୀ), ମହାଭାଣ୍ଡ (ଅତି ବେହିଆ) ଇତ୍ୟାଦି । ଯାତ୍ରା ଇତ୍ୟାଦି ଗମନ, ଭ୍ରମଣ, ଅଭିଯାନ, ତୀର୍ଥାଟନ, ପ୍ରସ୍ଥାନ, ପ୍ରୟାଣକୁ ସୂଚାଏ; ମାତ୍ର ମହାଯାତ୍ରା ଅର୍ଥ ମହାପ୍ରୟାଣ, ସ୍ୱର୍ଗ ଗମନ, ପରଲୌକିକ ଯାତ୍ରାକୁ ନିର୍ଦ୍ଦିଷ୍ଟ କରେ । ଜୀବନର ଅନ୍ତିମ ସତ୍ୟଟି ମହାଯାତ୍ରା । ମୃତ୍ୟୁ କବଳରେ ସର୍ଭିଏ କବଳିତ; ଏପରିକି ମର୍ତ୍ତ୍ୟରେ ଲୀଳାଖେଳା କରୁଥିବା ଅବତାର ପୁରୁଷମାନେ ଏଥିରୁ ବାଦ ପଡନ୍ତିନି । ମୃତ୍ୟୁକୁ କେହି କେହି ଭୟାନକ, ବିଭତ୍ସ, ଆତଙ୍କ ଭାବି ଭୀତକାତର ହୋଇଥାନ୍ତି । କିନ୍ତୁ ସଂସାରବିମୁଖଙ୍କ ପାଇଁ ଏହା ଏକ ଆଶୀର୍ବାଦ । ସେମାନେ ଅତି ଆଦରରେ ତାକୁ ବଂଧୁ, ସୁହୃଦ, ସଖା ଭାବେ ଆପଣେଇଥାନ୍ତି । ମୃତ୍ୟୁ ପରେ ମଣିଷର ଶେଷ ନିଦ୍ରା, ଜୀବନ ନାଟକର ଯବନିକା । ମରଣ ପରେ ଜୀବର ଭଲ ମନ୍ଦ ବାରିହୁଏ । ସତ ମଣିଷକୁ ସମାଜ ଝୁରେ, ଅନେକ ଲୁହ ଗଡାନ୍ତି । ସଦାଚାରୀ, ପରୋପକାରୀ, ଲୋଭ, ହିଂସାରହିତ ବ୍ୟକ୍ତି ବିଶେଷ ପୁଣ୍ୟବନ୍ତ । ଅପରପକ୍ଷରେ ପରଶ୍ରୀକାତର, ହିଂସ୍ର, ଅସଦାଚାରୀମାନେ ପାପୀ, ଦୃଷ୍ଟ, ପାମର, ଅବିବେକ, ନିଷ୍ଠୁର । ଏମାନଙ୍କର ବିନାଶରେ ସମାଜ ଆଶ୍ୱସ୍ତ ହୁଏ । ପ୍ରାଣୀର ଯଶ, କୀର୍ତ୍ତି, ଅପକୀର୍ତ୍ତି ସବୁ ପ୍ରକାଶିତ ହୁଏ ମୃତ୍ୟୁ ପରେ । ଜଗନ୍ନାଥ ଦାସଙ୍କର ଭାଗବତ କହେ, " ପ୍ରାଣୀର ଭଲମନ୍ଦ ବାଣୀ/ମରଣକାଳେ ତାହା ଜାଣି ।" ଏସବୁର ଉର୍ଦ୍ଧ୍ୱରେ କର୍ମଭୂମିରୁ ଯନ୍ତଣାରହିତ, ସୁଖଦ ପ୍ରସ୍ଥାନ ସମସ୍ତଙ୍କର ଏକାନ୍ତ କାମ୍ୟ ।

କର୍ମକୁ ନେଇ ଭଲ ମନ୍ଦର ବିଚାର । ସତ୍‌କର୍ମରେ ସ୍ୱର୍ଗଯାତ୍ରା । କୁକର୍ମ ପାଇଁ ନରକଗତି । କର୍ମ ଭିତ୍ତିରେ ପାପ ପୁଣ୍ୟର ବିଚାର । ଏହା ବ୍ୟକ୍ତି ବିଶେଷ, ସ୍ଥାନ ବିଶେଷରେ ଭିନ୍ନ ଦୃଷ୍ଟିରେ ଦେଖାଯାଏ, ସଂଜ୍ଞା ବଦଳିଯାଏ । କୁଟୁମ୍ବ ପ୍ରତି ପୋଷଣ ପାଇଁ ଅବଲମ୍ବନ କରୁଥିବା ହୀନପନ୍ଥାକୁ କେହି କେହି କର୍ତ୍ତବ୍ୟ କହି ସଫାସୁତୁରା ହେବାକୁ ଚେଷ୍ଟା କରନ୍ତି । ଏହି କଥାଟି ମଧ୍ୟ ଦସ୍ୟୁ ରତ୍ନାକର କହିଥିଲା । ଋଷିଙ୍କ ଉପଦେଶ ତାକୁ ବିଷ ତୁଲ୍ୟ ମନେହେଲା; ମାତ୍ର ମୋହଭଙ୍ଗ ପରେ ସେ ନିମଜ୍ଜିତ ହେଲା ତପସ୍ୟାରେ । ଏଣିକି ସେ ଋଷି ବାଲ୍ମୀକି । ଗୋଟେ ଶରାଘାତ କ୍ରୌଞ୍ଚ ପକ୍ଷୀର ଯନ୍ତ୍ରଣାକାତର କରୁଣ କ୍ରନ୍ଦନ ତାଙ୍କ ଆତ୍ମାକୁ ବିଗଳିତ କରିଦେଲା । ଝରିଲା ଋଷି କଣ୍ଠରୁ ରାମାୟଣର ଅମୃତବାଣୀ । ଏଣୁ ପାପ ପୁଣ୍ୟ ଏକ ଆପେକ୍ଷିକ ଶବ୍ଦ । ଏହାର ବିଚାର ବ୍ୟକ୍ତିର ମାନସିକତା ଉପରେ ନିର୍ଭରକରେ । ସରଳଭାବେ କହିଲେ ମଣିଷର ଆଚରଣରେ 'ସୁ', 'କୁ' ର ଶ୍ରେଷ୍ଠ ନିଦର୍ଶନ ପ୍ରକଟିତ । ଉତ୍ତମ କର୍ମ ପାଇଁ ପୁରସ୍କାର, ମନ୍ଦାଚରଣ ପାଇଁ ତିରସ୍କାର, ନିନ୍ଦା, ଅପବାଦ, ଘୃଣା ସବୁକିଛି । କର୍ମକୁ ନେଇ ସ୍ୱର୍ଗ, ନରକ ଯାତ୍ରା- ଏ କଥାଟି ପୁରାଣ ଶାସ୍ତ୍ରରେ ପ୍ରାଞ୍ଜଳ ଭାବେ ବର୍ଣ୍ଣିତ ।

ପାପ ପୁଣ୍ୟକୁ ନେଇ କେତେ କେତେ ବିଚାର; ନାନା ନୀତି କଥା । ଛୋଟ ଛୋଟ ଅପରାଧକୁ ବାଦ୍ ଦେଲେ ଗୋ ବ୍ରାହ୍ମଣ ହତ୍ୟା ଆଦି ମହାପାତକ । ଏ କର୍ମ ପାଇଁ ଶେଷଗତି ପୂତିଗନ୍ଧମୟ, କୁମ୍ଭୀପାକ, ରୌରବ ନରକକୁ । ଦାନ, ଧ୍ୟାନ, ପୁଣ୍ୟ, ପରୋପକାର, ଅହିଂସା ଆଦି ଦେବୋପମ ଗୁଣାଧିକାରୀଙ୍କର ସ୍ୱର୍ଗପ୍ରାପ୍ତି । ଧର୍ମ ଅଧର୍ମର ଦୂରତା ନିର୍ଣ୍ଣୟ କାଳେ କାଳେ କଷ୍ଟସାଧ୍ୟ ବ୍ୟାପାର । କାମିନୀ କାଞ୍ଚନ ମୋହ, ଗର୍ବ ଅହମିକା , ପାତର ଅନ୍ତର ନୀତି କରୁଥିବା ବ୍ୟକ୍ତିମାନେ ମଧ୍ୟ ସ୍ୱର୍ଗଗାମୀ ହୋଇପାରନ୍ତିନି । ଏ କଥାକୁ ଆଦିକବି ସାରଳାଦାସ ମହାଭାରତରେ ଚିତ୍ରଣ କରିଛନ୍ତି । ପାଣ୍ଡବମାନଙ୍କ ସ୍ୱର୍ଗାରୋହଣ (ମହାଯାତ୍ରା) ରେ କେବଳ ଧର୍ମରାଜ ଯୁଧିଷ୍ଠିର ସଫଳ ହୋଇଛନ୍ତି । ଅନ୍ୟମାନେ ମୃତ୍ୟୁବରଣ କରିଛନ୍ତି ଆପଣାର କୃତକର୍ମ ପାଇଁ । ଏ କଥାକୁ ମଧ୍ୟ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ସ୍ୱ ପ୍ରବନ୍ଧ ମହାଯାତ୍ରାରେ ଉଲ୍ଲେଖ କରିଛନ୍ତି । ପ୍ରାଚୀନ କବିଙ୍କ ରଚନାରେ ଧର୍ମ ଅଧର୍ମର ଚିତ୍ର ଖୁବ୍ ମଞ୍ଜୁଳ । ଯୁଗସ୍ରଷ୍ଟା କବିବର ରାଧାନାଥ ରାୟ ମଧ୍ୟ ବଡିମା, ଅହଂକାର ପ୍ରଦର୍ଶନ କରୁଥିବା କ୍ଷମତାଲୋଭୀଙ୍କୁ ଆପଣାର ଖଣ୍ଡ କାବ୍ୟ ଦରବାରରେ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି ।

ଧର୍ମକ୍ଷେତ୍ର କୁରୁକ୍ଷେତ୍ର । ଚାଲିଛି ମହାସମର । ଗୋଟେପଟେ ପାଣ୍ଡବ, ଅପରପକ୍ଷେ ଦୁରାଚାରୀ କୌରବ । ଧୃତରାଷ୍ଟ୍ରଙ୍କ ଶତପୁତ୍ର ନିଧନରେ ମହାଭାରତ ଯୁଦ୍ଧର ଯବନିକା । ବାସ୍ତବରେ ଦେଖିଲେ ଏ ମହାସଂଗ୍ରାମ ପାଣ୍ଡବ ଅବା କୌରବମାନଙ୍କର

ନଥିଲା । ସ୍ୱୟଂ ଶ୍ରୀକୃଷ୍ଣ ଧର୍ମସଂସ୍ଥାପନ ପାଇଁ ଏ ସଂଗ୍ରାମ ରଚିଥିଲେ । ଏ କଥାଟି ମଧ୍ୟ ଶ୍ରୀକୃଷ୍ଣ ଭଗବଦ୍ ଗୀତାରେ କହିଛନ୍ତି; "ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ/ ଅଭ୍ୟୁତ୍‌ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍/ ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍/ ଧର୍ମ ସଂସ୍ଥା ପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।" ଯୁଦ୍ଧର ପରିସମାପ୍ତି ପରେ ଧର୍ମରାଜ ଯୁଧିଷ୍ଠିର ହସ୍ତିନା ସିଂହାସନାରୂଢ଼ । ଯଦୁବଂଶ ଧ୍ୱଂସ, ପାଣ୍ଡବଙ୍କ ସଖା, ଗୁରୁରୂପୀ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ- ଏଇ ହୃଦୟ ବିଦାରକ ସମ୍ବାଦରେ ଧର୍ମରାଜ ମ୍ରିୟମାଣ । ଶ୍ରୀକୃଷ୍ଣଙ୍କ ବ୍ୟତିରେକେ ଆଉ ରାଜ୍ୟଶାସନ ସମ୍ଭବନଥିଲା । ସେ ଭୀମାର୍ଜୁନ ଆଦି ଚାରି ଭାଇଙ୍କୁ ଡାକି ବ୍ୟକ୍ତ କଲେ ଆପଣାର ମନୋଭାବକୁ । ପରୀକ୍ଷିତଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କଲେ । ଏଥର ସ୍ୱର୍ଗାରୋହଣ ଯାତ୍ରା । ତାପସ ବେଶ ଧାରଣ କରି ପାଣ୍ଡବମାନେ ହିମାଳୟ ଆରୋହଣରୁ ଶୁଭାରମ୍ଭ କଲେ ମହାଯାତ୍ରା ।

ତୁଷାରାଚ୍ଛନ୍ନ ହିମାଳୟ, ଉତ୍ତୁଙ୍ଗ ଶିଖର । ସର୍ବାଗ୍ରେ ଶାନ୍ତ, କାନ୍ତ, କମ୍ର, ନିରବ ଯୁଧିଷ୍ଠିର । ପଛେ ପଛେ ଚାରିଭାଇ, ପତ୍ନୀ, ଦ୍ରୌପଦୀ । ପ୍ରଥମେ ପତ୍ନୀ, କ୍ରମରେ ଅନ୍ୟ ଚାରିଭାଇ ଭୂପତିତ ହେଲେ । ଏହାର କାରଣ ଗୋଟିକ ପରେ ଗୋଟିଏ କହିଥିଲେ ଯୁଧିଷ୍ଠିର ନିର୍ବିକାର ଚିତ୍ତରେ । ପଞ୍ଚ ପାଣ୍ଡବଙ୍କର ପତ୍ନୀ ହୋଇ ମଧ୍ୟ ଦ୍ରୌପଦୀଙ୍କ ଅର୍ଜୁନଙ୍କୁ ଅଧିକ ଭଲ ପାଇବା, ସହଦେବଙ୍କ ଜ୍ଞାନ ଗର୍ବ, ନକୁଳଙ୍କର ସୌନ୍ଦର୍ଯ୍ୟ ଅହମିକା, ଅର୍ଜୁନଙ୍କର ଶ୍ରେଷ୍ଠ ଯୋଦ୍ଧା ଅହଂକାର, ଭୀମଙ୍କ ଅଧିକ ଲୋଭ, ଭୋଜନ ଆସକ୍ତି- ଏ ସବୁ ସେମାନଙ୍କ ମୃତ୍ୟୁର କାରଣ ହେଲା । ସତ୍ୟନିଷ୍ଠ ଯୁଧିଷ୍ଠିର କାମ, କ୍ରୋଧ, ଲୋଭ, ଅହମିକାର ବହୁ ଉର୍ଦ୍ଧ୍ୱରେ ଥିଲେ । ଜୀବନରେ ଥରୁଟିଏ ମାତ୍ର ବାଧବାଧକତାରେ ଉଚ୍ଚାରଣ କରିଥିଲେ ଅଶ୍ୱତ୍‌ଥାମା ହତ । ଏହି ତ୍ରୁଟି ତାଙ୍କ ପୂଜ୍ୟ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ନିଧନର କାରଣ ହେଲା । ସେଥିପାଇଁ ସେ ସଶରୀରେ ନରକ ଦର୍ଶନ କଲେ ।

ଅମରାବତୀରେ ନାହିଁ ଜରା, ବ୍ୟାଧି, ଶୋକ, ହିଂସା, ଦ୍ୱେଷ, କ୍ରୋଧ । ସତ୍ୟ, ଶାନ୍ତି ସଦା ବିରାଜମାନ । ନର୍କ ଏହାର ସଂପୂର୍ଣ୍ଣ ବିପରୀତ । ପୂତିଗନ୍ଧମୟ ବାୟୁମଣ୍ଡଳ, ରାଶିରାଶି ପର୍ଯ୍ୟୁଷିତ ବିକ୍ଷିପ୍ତ ଶବ, ଗୃଧ୍ର, ଶ୍ୱାନ, ଶୃଗାଳ, କୀଟଙ୍କର ଭୋଜନ । କିଏ ତପ୍ତତୈଳକୁଣ୍ଡରେ ତ କାହା ଦେହ ବର୍ଚ୍ଛାରେ ଶତବିଦ୍ଧ, ବିକଟ ହା ହା କାର ଧ୍ୱନି । ଏ କଥା ଦର୍ଶନ ମାତ୍ରେ ଯୁଧିଷ୍ଠିର ସେଠାରୁ ପ୍ରତ୍ୟାବର୍ତ୍ତନ ପାଇଁ ଦେବରାଜ ଇନ୍ଦ୍ରଙ୍କୁ ବିନମ୍ର ନିବେଦନ କଲେ । କିନ୍ତୁ ତାଙ୍କ ଉପସ୍ଥିତି ଦେଇଥିଲା ଯନ୍ତ୍ରଣାକ୍ଲିଷ୍ଟ, ନରକଭୋଗୀ ଆତ୍ମାଙ୍କୁ ଉପଶମ । ଏଣୁ ଧର୍ମରାଜ ପ୍ରସ୍ଥାନ ନ କରିବା ପାଇଁ ସେମାନେ କାକୁତି ମିନତି କଲେ । ଧର୍ମରାଜ ସେମାନଙ୍କ ପାଇଁ ନର୍କ ଭୋଗିବା ପାଇଁ ମଧ୍ୟ ଇଚ୍ଛା ପ୍ରକାଶ କଲେ । ଏପରିକି

ତାଙ୍କ ସ୍ୱର୍ଗାରୋହଣ ସମୟରେ ଥିବା ବିଶ୍ୱସ୍ତ ସାଥୀ ଶ୍ୱାନଟି ପାଇଁ ମଧ୍ୟ ସ୍ୱର୍ଗସମ୍ପଦ ତୁଚ୍ଛ ମଣିଲେ । ତାହା ଦେବରାଜ ଇନ୍ଦ୍ରଙ୍କୁ ଗଭୀର ଭାବେ ପ୍ରଭାବିତ କଲା । ପ୍ରକାଶଥାଉ କି ଶ୍ୱାନଟି ଥିଲେ ଧର୍ମଦେବତା, ନରକଟି ଥିଲା କୃତ୍ରିମ । କେବଳ ଥରୁଟିଏ ମିଥ୍ୟା କହିଥିବାରୁ ଯୁଧିଷ୍ଠିର ନରକ ଦେଖିଲେ । ସଦେହରେ ସ୍ୱର୍ଗଗମନ କଲେ; ମାତ୍ର ଅନ୍ୟ ଚାରି ପାଣ୍ଡବ, ଦ୍ରୌପଦୀ ନିଜ ନିଜ ଅହଂକାର, ଅହମିକା ପାଇଁ ମୃତ୍ୟୁ ପରେ ସ୍ୱର୍ଗବାସୀ ହେଲେ ।

ମହାଭାରତରେ ବର୍ଣ୍ଣିତ ମହାଯାତ୍ରା ପ୍ରସଙ୍ଗର ସାମାଜିକ ମୂଲ୍ୟବୋଧ ବହୁ ଉଚ୍ଚରେ । ଜୀବନକୁ ମଧୁମୟ, ଛନ୍ଦାୟିତ, ସରସ ସୁନ୍ଦର କରେ ମହତ ଗୁଣାବଳୀ । ଏହା ସତ୍ୟନିଷ୍ଠଙ୍କର ଆଭୂଷଣ । ତେବେ ସ୍ୱର୍ଗ, ନରକ ଏକ କଳ୍ପନା ମାତ୍ର । ସୁଖ ପ୍ରାପ୍ତି; ଦୁଃଖ, ଯନ୍ତ୍ରଣା, ଯାତନା ଭୋଗିବା- ଏ ତ ଅନୁଭବର କଥା । ଅନ୍ୟକୁ ଦଣ୍ଡ ଦେଇ ଆନନ୍ଦ ପାଉଥିବା ବ୍ୟକ୍ତି ବିଶେଷଙ୍କ ପାଇଁ ଦଣ୍ଡ ତ ଅବଶ୍ୟମ୍ଭାବି । ଆପଣାହସ୍ତେ ଜିହ୍ୱା ଛେଦନକାରୀଙ୍କର ବା କିଏ ହେବ ପ୍ରତିବାଦୀ ? ଦୋଷୀ ପାଇଁ ନ୍ୟାୟାଳୟରେ ଦଣ୍ଡର ବ୍ୟବସ୍ଥା ରହିଛି । ଥୋକେ ଏଥିରୁ ବର୍ତ୍ତିଯାନ୍ତି । ମର୍ତ୍ତ୍ୟ ଅଦାଲତ ଉପରେ ଆଉ ଗୋଟେ ଧର୍ମ ଅଦାଲତ । ଏଥିରୁ ଦୋଷୀ ମୁକୁଳିବା ଅସମ୍ଭବ । ଧର୍ମରାଜଙ୍କ ବିଚାରାଳୟରେ ଚିତ୍ରଗୁପ୍ତ ପାଞ୍ଜିଆକରଣ । ତାହାର ହିସାବ ଅତ୍ୟନ୍ତ ନିର୍ଭୁଲ୍ । ଯନ୍ତୁରାଣଙ୍କ ଦଣ୍ଡ ଅତ୍ୟନ୍ତ କଠୋର । "ତୋତେ ରୋଚୁ ଅବା ନ ରୋଚୁ ସେ ନ୍ୟାୟ ଚରମ ଅଟଇ ଚିତ୍ରଗୁପ୍ତ ରାୟ/ ନଥିବେ ଓକିଲ ଲଢି ଯେ ମାମଲା/ କରିବେ ଯୁକ୍ତିବଳେ କଳାଧଳା" । ସହସ୍ର ଯୋନି ଜନ୍ମ ପରେ ଏ ଦୁର୍ଲଭ ମଣିଷ ଜୀବନ, ତାକୁ ଅଗାଡି କଲେ କି ସୁଖ ବା ମିଳିବ ? "ଜନ୍ମଫଳ ଭବେ ବଡ ପଣ ପାଇ/ ଧର୍ମପଣେ ତାକୁ କର ଚିରସ୍ଥାୟୀ/ ଧର୍ମ ଏକ ପୋତ ଗଢିଛନ୍ତି ବିଧି/ ତରିବାକୁ ଏଇ ସଂସାର ବାରିଧି/ଧର୍ମ ଏକ ସିନା ମହତ ପଣିଆ/ଆଉ ବଡ ପଣ ଅଢେଇ ଦିନିଆ । " ଏ କଥା କି ଅନ୍ୟଥା !

ସ୍ୱର୍ଗ, ନରକର ନିଳୟ ଏ ପୃଥିବୀ । ଜୀଇଁବା ମରିବା ସବୁ ଏଇଠି । ସୁ କର୍ମ ଜୀବନ ବୀଣାକୁ ନିକ୍ୱଣିତ କରେ ମଧୁର ରାଗିଣୀରେ । ତା ପରେ ଯାତ୍ରା ହୁଏ ଶୁଭ । ଶୁଭିଲାଣି ଗଭୀର ନିରବତା ଭଙ୍ଗ କରି ମଧୁର ମୂର୍ଚ୍ଛନା । "ସ୍ତବ୍ଧ ଦିଗନ୍ତ, ନିଦ୍ରିତ ଧରଣୀ, ଶାନ୍ତ, ସୁସୁପ୍ତ, ନିରଜନ ସରଣୀ/ ପ୍ରଗାଢ ରାତ୍ରି- ଉଠରେ ଅସୀମ ପଥଯାତ୍ରୀ/ ନିବିଡ ତିମିସ୍ରା- ସିନ୍ଧୁ-ସଲିଳେ/ ଦେ ତୋର ତରଣୀ ଭସାଇ ।" ଏଣିକି ଯାତ୍ରା ହେବ ମଙ୍ଗଳମୟ ମହାପ୍ରଭୁଙ୍କ ପ୍ରେମ, ଦୟା, କ୍ଷମା,କରୁଣାରୁ । ତାହା ହିଁ ହେବ ମହାଯାତ୍ରା ।



# ‘ଜୀବନ ସଂଗୀତ’ର ଦରଦୀ କବି

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଆଧୁନିକ ଓଡିଆ ସାହିତ୍ୟର ମାର୍ଗ ଦର୍ଶକ, ଅପ୍ରତିଦ୍ୱନ୍ଦ୍ୱୀ ଗୀତି କବି, ସ୍ୱନାମଧନ୍ୟ ସାହିତ୍ୟିକ; ଅଦ୍ୱିତୀୟ ମଧ୍ୟ । ବିଭୁଙ୍କ ଅପାର କୃପାରୁ କାହିଁ ତାଙ୍କର କେଉଁଥିରେ ଊଣା ନାହିଁ । ବିତ୍ତଶାଳୀ ଜମିଦାର ପରିବାର । ରୂପ, ଗୁଣ ସମ୍ପନ୍ନ ଲକ୍ଷ୍ମୀକାନ୍ତ ଗାନ୍ଧର୍ବ ବିଦ୍ୟାରେ ପାରଦର୍ଶୀ, ପାରିବାରିକ ଆଦର୍ଶରେ ଅନୁପ୍ରାଣିତ ଜଣେ କାୟ-ମନୋବାକ୍ୟରେ ବୈଷ୍ଣବ; ମାତ୍ର ବିଚିତ୍ର ଏ ଦୁନିଆ, ଆହୁରି ବୈଚିତ୍ର୍ୟମୟ ଏ ସୃଷ୍ଟି । ତା’ର ସ୍ରଷ୍ଟା ମଧ୍ୟ ଚିର ରହସ୍ୟମୟ; ଅବ୍ୟକ୍ତ, ଅଣାକର, ନିରାକାର, ନିଖିଳ, ଅନନ୍ତ, ପରଂବ୍ରହ୍ମ । ସେହି ହିଁ ଜୀବର ଭର୍ତ୍ତାକର୍ତ୍ତା ଦୈବ ବିଧାତା । ତାଙ୍କରି ସୃଷ୍ଟିରେ କେହି ସ୍ୱୟଂସଂପୂର୍ଣ୍ଣ ନୁହନ୍ତି । ଏଥିରୁ ଲକ୍ଷ୍ମୀକାନ୍ତ ବା ବାଦ୍ ପଡନ୍ତେ କେମିତି ? ସବୁ ପୂର୍ଣ୍ଣତା ସତ୍ତ୍ୱେ; ସେ କୁଷ୍ଠ ବ୍ୟାଧିଗ୍ରସ୍ତ ଯାହା, ତାଙ୍କ ଜୀବନକୁ କରିଛି ଦୁର୍ବିସହ । ସତେ ଯେମିତି ଜ୍ୱାଳା ଯନ୍ତଣା, ହତାଶା ମଧ୍ୟ ଦେଇ ସେ ସନ୍ଧାନ ପାଇଛନ୍ତି ସତ୍ୟ, ଶିବ, ସୁନ୍ଦର ପରମ କାରୁଣିକ ପରମେଶ୍ୱରଙ୍କର ! ଜୀବନ ଯାତନା ଗରଳକୁ ଆକଣ୍ଠ ପାନକରି ସାଜିଛନ୍ତି ନୀଳକଣ୍ଠ । ଏଣିକି ବେସାହାରା ଜୀବନର ସାଥୀ ସାରଥି ହିଁ ଲେଖନୀ । ବାଣୀ ଆରାଧନା, ବିଭୁବନ୍ଦନା-ଏଗୁଡିକ କାନ୍ତକବିତାର ଅନ୍ତଃସ୍ୱର । ଓଡିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସେ ରସୋତ୍ତୀର୍ଣ୍ଣ କରି ଦେଇଛନ୍ତି । ଆଧିଭୌତିକ, ରହସ୍ୟବାଦୀ ଚେତନା ବୋଧକୁ ଆପଣେଇ ନେଇ କବି ଲେଖନୀରୁ ଜନ୍ମ ନେଇଛି ‘ଜୀବନ ସଂଗୀତ’ ତାହା, ଯେତିକି ରସାଳ, ଭାଗଗର୍ଭକ, ତା’ ଠାରୁ ବଳି ଚିତ୍ତ- ପ୍ରାଣ-ସ୍ପର୍ଶୀ । ଭକ୍ତି ଉଲ୍ଲାସମୟ କବି ପ୍ରାଣର ଉଚ୍ଛ୍ୱଳାଭାବ- ତରଙ୍ଗ ଛୁଇଁଛି କୋଟି ଜନ-ମନ-ପ୍ରାଣକୁ । ତୃଷା ମେଣ୍ଟିଛି ଭକ୍ତ ଜନ-ମନ ଚାତକର । ଦୀନକୃଷ୍ଣ ଦାସଙ୍କ ପରି ଦୁରାରୋଗ୍ୟ ବ୍ୟାଧିର ଶତ ପୀଡନ ସତ୍ତ୍ୱେ; କବି ଉଡାଇ ଦେଇଛନ୍ତି ପ୍ରାଣର ମୁକ୍ତି ଧ୍ୱଜା ଯାହା, ଉଡ୍ଡୀୟମାନ କାଳକାଳକୁ ।

ଲକ୍ଷ୍ମୀକାନ୍ତଙ୍କ ଜୀବନ ସଙ୍ଗୀତ ମୁଖ୍ୟତଃ ରହସ୍ୟାଲୋକର ଫିକା ଜୋଛନା ବୋଳା ମିଷ୍ଟିସିଜିମ୍ । "କବି ମଧ ରହସ୍ୟବାଦୀଟିଏ ହେବା ସ୍ୱଭାବିକ । ଜୀବନର ଦୁଃଖ, ଖେଦ, କଲ୍ମଷ, କାଳିମା, ମଧରେ ସେ ଥିଲେ ଆଶାବାଦୀ । ନିରାଶା ନୁହେଁ, ଆତ୍ମ ବିଶ୍ୱାସ ହିଁ ତାଙ୍କୁ ବାଟ କଢାଇ ନେଇଛି । ଆତ୍ମ ନିମଜ୍ଜନ ମଧ୍ୟରେ ସେ ସନ୍ଧାନ ପାଇଛନ୍ତି ପରମାତ୍ମାଙ୍କର । ରହସ୍ୟଘନ, ଅତୀନ୍ଦ୍ରିୟ , ଚେତନା ଆଡକୁ କ୍ରମେ ପ୍ରଧାବିତ ହୋଇଛନ୍ତି । ସୃଷ୍ଟି ହୋଇଛି ବିଭୁ ଚେତନା ବୋଧ ।" ଆପଣାର ଶକ୍ତି, ସାମର୍ଥ୍ୟ, ପୁରୁଷାକାର; ଗୋଟିଏ କଥାରେ କହିଲେ ପାରିବାପଣ ଯେଉଁଠି ହାର୍ ମାନେ, ସେଇଠାରୁ ଆରମ୍ଭ ହୁଏ ଅଦୃଶ୍ୟଙ୍କ ସଂଧାନ । କୁସୁମିତ ସକାଳ, ଫଗୁଣ ସନ୍ଧ୍ୟାରେ ଅବା ଦୀର୍ଘ ବାଦଲ ରାତିରେ, ଝରା ବରଷାରେ କିମ୍ବା ରୌଦ୍ରକ୍ଲିଷ୍ଟ ଟାଆଁସା ଦ୍ୱିପ୍ରହରେ ଝରିପଡେ ଅମୃତ ବାରି । ମିଳିଯାଏ ତାଙ୍କ ନାମ, ଧାମ, ଇଲାକାର ଠିକଣା । ପାର୍ଥିବ ସୁଖ ଲାଳସା, ଆପେ ଅନ୍ତର୍ହିତ ହୁଏ । ମିଳେ ଅନିର୍ବଚନୀୟ ରସମାଧୁରୀ । ବିଭୁ ନାମ ସ୍ମରଣ ଚିନ୍ତନ, ଭଜନ କୀର୍ତ୍ତନାଦିରେ ହିଁ ଏହା ସମ୍ଭବ- ଲକ୍ଷ୍ମୀକାନ୍ତ ତାହା ଦର୍ଶାଇ ଦେଇଛନ୍ତି ଜୀବନ ସଙ୍ଗୀତରେ ।

ଦିନ ସମାନ ଭାବେ ଯାଏନି, ଆଜି ସୁଖ ତ କାଲି ଦୁଃଖ । ଏହା ତ କାନ୍ତକବିଙ୍କ କପାଳ ଲିଖନ । ସାରା ଜୀବନ ମାନସିକ ଯନ୍ତ୍ରଣାରେ ଛଟପଟ କବି ପ୍ରାଣଟି ବଡ ଆତୁରରେ ବ୍ୟକ୍ତ କରି ଦିଏ ଆପଣା ମନର ଗୋପନ କଥାକୁ ତା' ମନ ମଣିଷଠାରେ । ଅଭିମାନ କରେ; ମାତ୍ର କବି ସୂର୍ଯ୍ୟଙ୍କ ପରି ଜଗନ୍ନାଥ ଜଣାଣ ଅବା ସର୍ପ ଜଣାଣରେ ଥିବା ଯାଚଞ୍ଚା କଥାଟି ଜୀବନ ସଙ୍ଗୀତରେ ଦେଖିବାକୁ ମିଳେନି । କବିଙ୍କର ଗୋଟିଏ ମାତ୍ର ଦୟିନୀ, ତାହା ମୁକ୍ତି କାମନା । କବି ସହି ସହି ନିଦା ପଥର । ସବୁ କଷ୍ଟ ଯନ୍ତ୍ରଣା ପରେ ଇଚ୍ଛାମୟ କଅଣ ବା ଅଧିକ କଷଣ ଦେଇପାରିବେ ? ଏଣୁ ଅଭିମାନରେ ଗାଇଛନ୍ତି,

"ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡାଇବ ହେ ?
ଯାହା ଦେଇଥିଲ ସବୁ ତ ନେଲଣି । ଆଉ ଏବେ କିସ ଛଡାଇବ ହେ ।
ସଂସାରରେ ଯେ କରଇ ଆଶ, ଧାଏଁ ସିନା ତୁମରି ପାଶ ।
ସକଳ ଭରସା ଯାର ତୁଟିଲାଣି କିସ ବୋଲି ତାକୁ ଡରାଇବ ହେ (ସବୁଥିରୁ ବଞ୍ଚିତ କରି) ।"

ଠକି ଠକି ଥରକୁ ଥର ସଂସାରରେ ଯେ ଆଶା କରେ , କାମନା ବାସନା ଖୋଜେ; ଧନଜନ, ଦାରା ସୁତ, ଅର୍ଥପ୍ରାର୍ଥୀ ହୁଏ, ସେ ଧାଏଁ ତା' ରି ପାଖକୁ ।

କବି କିନ୍ତୁ ଚାରି ଦଉଡିକଟା । ଦାଣ୍ଡ ମଝିଟାରେ ଛିଡା ହୋଇ ଆଉ ଲୋକହସା ହୋଇ ବାଟ ହୁଡିବେନି । ଏଣିକି ମୁକ୍ତିଧ୍ୱଜା ଉଡାଇବା ଯାହା ବାକି ରହିଲା । ରୋକ୍‌ଠୋକ୍ ଉତ୍ତର ତାଙ୍କର ପ୍ରିୟତମଙ୍କୁ. " ହାତଠାରି ଲୋଭ ଦେଖାଇ / ଡାକ ନାଟ ଦେଖିବା ପାଇଁ, ସିହାଣ କରୁଛ ଆହୁରି ଥରେକି/ ନାକ ଘଷି କାନ ମୋଡାଇବ ହେ ।" ଏହା ଜୀବନ ସଙ୍ଗୀତର ଭାବ ବିହ୍ୱଳପୂର୍ଣ୍ଣ କରୁଣ ଅଭିବ୍ୟକ୍ତିଟିଏ । ଏଇ ସଙ୍ଗୀତଟି ରଚିତ ହୋଇଥିଲା ଏକ ମାହେନ୍ଦ୍ର ମୁହୂର୍ତ୍ତରେ । ସମଗ୍ର ଜଗତ ସୁସୁପ୍ତ, ନିଦ୍ରାରୁ ହଠାତ୍ ଜାଗ୍ରତ ହେଲେ ଲକ୍ଷ୍ମୀକାନ୍ତ, ଲେଖିଲେ ସବୁଥିରୁ ବଞ୍ଚିତ କରି । ଅଙ୍ଗୁଳି ବିହୀନ ତାଙ୍କ ହସ୍ତରେ ମାଟିବଂଶ ଅବଧାନଙ୍କ ଗୋଟାଳି ବାନ୍ଧି ଦେଇଥିଲେ ପତ୍ନୀ ଲବଙ୍ଗଲତା ଦେବୀ । ଭୂମି ଉପରେ ଗାରେଇ ଦେଲେ ଦରଦୀ ପ୍ରାଣର ବ୍ୟାକୁଳ ବ୍ୟଥା 'ସବୁଥିରୁ ବଞ୍ଚିତ କରି' କବିତାରେ । ଏହାର ପଟାନ୍ତର କଣ ଅଛି ଓଡିଆ କାବ୍ୟ ସାହିତ୍ୟରେ ?

ବୈଷ୍ଣବ କବି ଲକ୍ଷ୍ମୀକାନ୍ତ ରାଗାନୁଗା ଭକ୍ତି ମାର୍ଗୀ । କବି ଆପଣାକୁ ସଜେଇ ଦିଅନ୍ତି ନାୟିକା ରୂପେ, ପ୍ରତୀକ୍ଷା ତାଙ୍କର ପ୍ରିୟତମଙ୍କୁ । ପ୍ରାଣ ପୁଷ୍ପ ମାଲ୍ୟକୁ ଲମ୍ବାଇ ଦେବାକୁ ସତତ ବ୍ୟଗ୍ର ପ୍ରିୟତମଙ୍କ ଗଳାରେ । କେବଳ ଅପେକ୍ଷା ତିଥି ବାର ନକ୍ଷତ୍ର,ଶୁଭ ଲଗ୍ନକୁ । ପ୍ରାଣଟି ଶୟନେ, ସ୍ୱପନେ, ଜାଗରଣେ ଅପେକ୍ଷାରତ, ପ୍ରତି ମୁହୂର୍ତ୍ତରେ ଅନୁଭବକରେ ତାଙ୍କର ସ୍ଥିତି, "ପ୍ରଭାତେ ପ୍ରଦୋଷେ/ ନିଶିଥେ ଦିବସେ/ ଆଲୋକେ, ଅନ୍ଧାରେ/ ସଲିଳେ, ଆକାଶେ/ କେବେ ଦୂରେ, କେବେ ସନ୍ନିଧାନେ/ ହରଷ ବିଷାଦେ/ ମିଳନେ ବିବାଦେ/ ସମ୍ପଦେ ବିପଦେ/ କୁଟୀରେ ପ୍ରସାଦେ/ ସୁଧାଧାରା ଢାଳୁ କାନେ କାନେ (ତୁହି କ୍ଷଣେ କ୍ଷଣେ ଆସୁ) ।" ଅନ୍ତର୍ଯ୍ୟାମୀ, ଭାବଗ୍ରାହୀ, ଭକ୍ତ ପ୍ରାଣବଲ୍ଲଭ ପରମ କାରୁଣିକ ! ସେ କ'ଣ ରହିପାରିବେ ତାଙ୍କ ଦାସାନୁଦାସର ଦୁଃଖ, କଷ୍ଟ ଅନୁଶୋଚନା ଦେଖି ! ଉତ୍ସର୍ଗୀକୃତ ଭଗବତ ବିଶ୍ୱାସୀ ପ୍ରାଣ ସତ୍ତା ହିଁ ଏହାକୁ ଅନୁଭବ କରିପାରିବ, ଯେମିତି କରିଛନ୍ତି କାନ୍ତକବି । ତାଙ୍କ ପ୍ରାଣ ପୁରୁଷ ଅଖିଳ, ନିଖିଳ, ସର୍ବବ୍ୟାପକ । ଭିନ୍ନ ଭିନ୍ନ ସମୟରେ ତାଙ୍କର ନାନା ଅବତାର ଯାହା, ପ୍ରକଟିତ କରେ ଅଲୌକିକତାକୁ । ଦ୍ୱାପରଯୁଗରେ ସେ ଷୋଳସହସ୍ର ଗୋପୀଙ୍କ ପ୍ରେମରେ ମଜ୍ଜିଲେ - ତାହା ରାଗାନୁଗା, ଶ୍ରଦ୍ଧାଭକ୍ତି । ଗୌଡୀୟ ବୈଷ୍ଣବମାନେ ରାଧାକୃଷ୍ଣଙ୍କୁ ଅପ୍ରାକୃତ ପ୍ରେମମୂର୍ତ୍ତି ଭାବେ ଗ୍ରହଣ କରିଛନ୍ତି । ଶ୍ରୀକୃଷ୍ଣ ହିଁ ପରମ, ସମସ୍ତ ଜୀବ ରାଧାଭାବ ପୋଷଣ ପୂର୍ବକ ତାଙ୍କର ନିକଟରେ ପ୍ରେମ ନିବେଦନ

କରନ୍ତି । ଏଇ ଭାବ ପ୍ରକ୍ଷେପନ କରେ ଜୀବନ ସଙ୍ଗୀତର ଅନେକ କବିତା । ପରିବେଶ ରୋମାଞ୍ଚକର, ମେଘ କୋଳରେ ମୋହନିଆ ଶଶୀ, ଉଲ୍ଲସି ଉଠୁଛି ଅତି ସରସେ । ତା'ଅଙ୍ଗୁ ଝରି ପଡୁଛି ବିନ୍ଦୁ ବିନ୍ଦୁ ରଜତ ଧବଳ ମକରନ୍ଦ । ଭକ୍ତ ପ୍ରାଣ ଉଛନ୍ନ, ଏହି ବିହ୍ୱଳ, ସାତ୍ତ୍ୱିକ ଅନୁଭୂତିକୁ ବଖାଣି ଚାଲନ୍ତି କବି ବଡ ସରାଗରେ । ଆମନ୍ତ୍ରଣ କରନ୍ତି ତାଙ୍କ ଚିରଉପାସ୍ୟ ଦେବତାଙ୍କୁ । ବରଣ କରନ୍ତି ସାଦରେ,

"ଏ ମଧୁ ନିଶୀଥେ ଆସ ବନ୍ଧୁ ଆଜି

ମିଳନ ବଂଶରୀ ଉଠିଲାଣି ବାଜି

ଆକୁଳ କଲାଣି ତୃଷିତ ପରାଣ ବାତୁଳ ବକୁଳଗନ୍ଧେ (ନିଖିଳ ବିଶ୍ୱନନ୍ଦିତ କରି ଜାଗିଛି ମଧୁରଛନ୍ଦେ) ।"

କବି ରହସ୍ୟମୟ ଘନ କୁହେଳିକାଛନ୍ନ ପରିବେଶ ମଧ୍ୟରେ ମଧ ଅନୁଭବ କରିଛନ୍ତି ଜଗତ ଜୀବ - ବନ୍ଧୁଙ୍କୁ । ସେ କ'ଣ ଖାଲି ଦାସିଆ, ଦୀନକୃଷ୍ଣ , ସାଲବେଗ ଅବା ବନ୍ଧୁ ମହାନ୍ତିଙ୍କର, ବଂଧୁ ମଧ କାନ୍ତକବିଙ୍କର; ଜନମ ଜନମର ସାଥୀ, ତାଙ୍କ ହୃଦୟର ସ୍ନିଗ୍ଧ ଶରଦ ଇନ୍ଦୁ । କବି ଜନମେ ମରଣେ ତାଙ୍କ ସହ ବନ୍ଧାବନ୍ଧି, ପ୍ରାଣ ସହ ପ୍ରାଣ ଛନ୍ଦା ଛନ୍ଦି । କିନ୍ତୁ ଦଗାଦିଆ ହଟିଆ ନଟନାଗର; ବଡ ଛନ୍ଦ କପଟିଆ । ତାଙ୍କ ଲୀଳା ତ ଅସୀମ । ସସୀମ ମାନଙ୍କ ସହ ତାଙ୍କର ଲୁଚକାଳି ଖେଳ । ତାଙ୍କୁ ପାଖରେ ନ ପାଇ କବି ଆତ୍ମା ହନ୍ତସନ୍ତ । କେତେକାଳରୁ ତାଙ୍କରି ସ୍ମୃତିଟିକୁ ଧରି ରହିଛନ୍ତି ଚାହିଁ ଚାହିଁ, କେତେ ଆଶା ରଖି ଦିନ ସରୁଛି । ତାଙ୍କ କଥା ସୁମରି, ଦିନରାତି କାନ୍ଦୁ କାନ୍ଦୁ କଟୁଛି । ତା ଚାତୁରୀର କି ତୁଳନା ଅଛି ? କବି କିନ୍ତୁ ସଂସାର ବିଷୟ ବାସନା ରୂପକ ମିଛ ଖେଳନାରେ ଭଣ୍ଡିବାର ନୁହନ୍ତି । ଏ ସବୁତ କାଳର ଗର୍ଭସ୍ଥ ହେବ, କରକା ପରାଏ ତରଳିଯିବ । ବୁଦ୍‌ବୁଦ୍ ପ୍ରାୟ ମିଳେଇ ଯିବ । ତାଙ୍କର ଫତୁରୀକୁ କବି ଜାଣି ସାରିଲେଣି । ତା' ଚାତର କି ଆଉ ଅଜଣା ରହିଛି ? ଏଣୁ ସଫା ସଫା କହିଦିଅନ୍ତି " ମୋ ଠେଇଁ ଫତୁରି ତୋର/ ଚଳିବ ନାହିଁ ଏଥର/ କଳିଣି ମୁଁ ତୋ ଚାତରତକ କଳନା/ ତୋ ଢେଙ୍ଗ ଚତୁରାରୀତି/ ଭଲେ ତ ଗଲାଣି ବିତି/ ଦେଖିଦେଖି ନିତି ନିତି ନୂଆ ଛଳନା ।" (ତୋ ଚାତୁରୀ ନାହିଁ ତୁଳନା)

କବି ସଂସାର ବିତୃଷ୍ଣ, ମୋହମାୟା ସବୁ ପରିତ୍ୟାଗ କରି ଦେଲେଣି । ଉଠ୍‌ପଡ ଦୁନିଆର ଆଉବା କି ଘର ସଜାଡିବେ ? ସଂସାର ହାଟରେ ନିତିପ୍ରତି ବଣିଜ କରି ଲାଭ କ୍ଷତି ହିସାବ କରିବାର ପ୍ରୟାସ ଆଉ ନାହିଁ । ଧନ, ଜନ, ଆଶା, ଭରସା ସବୁ ଶେଷ । ଏଠି ଧନ ନାହିଁ, ଅଛି କାମ, କ୍ରୋଧ । ଖାଲି ଲୋଭ; ଜନ ନାହିଁ ଅଛି ମାୟା, ମୋହ, କ୍ଷୋଭ । ପଦ ନାହିଁ ଖାଲି ମିଛ ଗରବ । ଏହାକୁ ନେଇ କି ବଞ୍ଚି ହୁଏ ? ସେହି ପରମଙ୍କ ପାଇଁ ବାକି ରହିଛି ଆଖିର ଲୁହ ଦି ଟୋପା । କବି ସଂସାର ବାସୀଙ୍କୁ ଜଣାଇ ଦିଅନ୍ତି, "କେତେ ଯତନରେ ସଜାଡିଥିଲି ମୁଁ ଘର ମୋର ଭାଙ୍ଗି ଗଲାଣି/ ମୋର ମୋର ବୋଲି ଯା'କୁ ବୋଲୁଥିଲି/ (ଏବେ) ଯା' ହେବାର ତାହା ହେଲାଣି । (ସବୁତ ମୋର ସରିଗଲାଣି)/ (ଧନ, ଜନ, ଆଶା, ଭରସା,) / ଧନ ନାହିଁ ଅଛି କାମ, କ୍ରୋଧ, ଲୋଭ/ ଜନ ନାହିଁ, ଅଛି ମାୟା, ମୋହ, କ୍ଷୋଭ/ ପଦ ନାହିଁ, ବୃଥା ମଦର ଗରବ/ ମନକୁ ମତାଇ ଦେଲାଣି" । (ଏବେ) ଯା' ହେବାର ତାହା ହେଲାଣି (କେତେ ଯତନରେ ସଜାଡିଥିଲି ମୁଁ) ।" ସବୁ ସୁଖ ଏବେ ଶେଷ । ଏଣିତି ନିଜ ରାହା ନିଜକୁ ଧରିବାକୁ ପଡିବ । ଅସଲ ଘର ଖୋଜିବାକୁ ପଡିବ । ସବୁ ଆଶା ତୁଟାଇ ଦେଇ କବି ଆପଣାର ନିର୍ଲିପ୍ତ ଭାବକୁ ପ୍ରକାଶ କରିଛନ୍ତି "ସାରାଟି ଜୀବନ ସାଧି ସାଧି ସାଧି/ ସବୁ ବାସନାର ବିରଚି ସମାଧି/ ସବୁ କର୍ମ ଯେବେ ହୋଇଲାଣି ଶେଷ । ପୋଡିଲାଣି ଘରରେ/ ଲୁଚିଲାଣି ଯେବେ ଜଡ଼ିତ ନୟନେ/ ଆଲୋକର ଶେଷ ରେଖାଟି/ ଲିଭିଲାଣି ଯେବେ ହୃଦୟ କୁଟୀରେ/ ଆଶାର ପ୍ରଦୀପ ଶିଖାଟି/ ଆଉ କାହା ଲାଗି ରହିଅଛୁ ଟାକି / ଆସିଲାଣି ତେଣୁ ଆଦର ଡାକରା (ଶୁଭ) ଅନୁକୂଳ କରରେ ।" (ସବୁ ସୁଖ ଯେବେ ସରିଲାଣି ଏବେ) ।" ଏହିଠାରୁ ପ୍ରାର୍ଥିବ ସୁଖ, କାମନାର ଅନ୍ତ । ଏଣିକି ଅସୀମ, ନିରାକାରଙ୍କ ଠିକଣା ଖୋଜା । ସେ ତ ସର୍ବ ବ୍ୟାପକ, ଭାବଗ୍ରାହୀ, ତାଙ୍କୁ ଯିଏ ଚିହ୍ନିଛି, ପାଇଛି ମଧୁର ମହକ, ପୁଲକ । ତେଣୁ ତାଙ୍କରି ପାଇଁ, "କେତେ ଦୀର୍ଘ ଉଜାଗର/ ଅଶ୍ରୁଧାର ଧୁଆ, କେତେ ତପ୍ତଶ୍ୱାସ/ କେତେ ହା-ହୁତାଶ ବୁହା/ଛାତି ଫଟା ଗୀତ ମୋର ବୁକୁ ରକ୍ତେ ଲେଖା/ ପ୍ରିୟ ମୋର, ସଖା ମୋର, ସାଥୀ ମୋର ଏକା ।" କବି ଶୁଣନ୍ତି ମୁହୁର୍ମୁହୁଃ,ତାଙ୍କରି ନୀରବ ମୂର୍ଚ୍ଛନା, ସେଇଥିରେ ତାଙ୍କରି ତୃପ୍ତି, ତାହା ତ ଜୀବନ ପାଇଁ ଚିର ଅମୃତ ନିର୍ଝର । ଜୀବନ ବୀଣାରେ ତାଙ୍କରି ନବ ନବ ଝଙ୍କାର । ଘନଘୋର ନିର୍ଜନ ରାତି, ଅବା ପୁଲକିତ ବସନ୍ତରେ ପରାଣ ସାଥୀ ଆସନ୍ତି । ତନୁ

ମନରେ କ୍ଷଣ କ୍ଷଣକେ ପୁଲକ, କ୍ଷଣକେ ସେ ଅନ୍ତର୍ହିତ । ତଥାପି, ଲଳିତ କାମୋଦୀ, ଆକୁଳେ ଝୁରଇ, ଆଶାବରୀ ଆଶା ମରମେ ମରଇ । କବିଙ୍କ ଉଦାସ ଭାବ; କିନ୍ତୁ ଖୋଜିବାରେ ଊଣା କରି ନାହାଁନ୍ତି, ସାଧନା ଅବ୍ୟାହତ ରଖିଛନ୍ତି । ବାକି ରହିଲା ସସୀମର ଅସୀମ ସହ ମହାମିଳନ କଥା ।

ଚିରରହସ୍ୟବାଦୀ ଲକ୍ଷ୍ମୀକାନ୍ତ ମହାପାତ୍ର । ଆପଣାକୁ ସଜାଇ ଦେଉଛନ୍ତି ବାସକ ସଜ୍ଜା ନାୟିକା ରୂପେ । ପ୍ରାଣ ପ୍ରିୟତମଙ୍କ ପାଇଁ କେତେ ନିଶି ଉଜାଗର । ହୃଦ ଦୀପାଳୀ ପ୍ରଜ୍ୱଳନ ପୂର୍ବକ ପ୍ରତୀକ୍ଷା ତାଙ୍କରି ଆଗମନକୁ । ବଡସରାଗରେ, ଚିର ବାଞ୍ଛିତଙ୍କ ପାଇଁ ସଜାଡନ୍ତି ଫୁଲ ଶେଯ । ଉତ୍ତାଳ ଚାନ୍ଦିନୀ ରାତି, ମଧୁ ଯାମିନୀ, " ବାତୁଳ ପରାଣ ଆକୁଳେ ଧାଏଁ; ବିଜନେ କୁସୁମ ଶୟନେ ଅଧରେ ଅଧର/ ହୃଦୟେ ହୃଦୟ ନୟନେ ଅରପି ନୟନେ/ କେତେ ଜନମର ଅକୁହା କାହାଣୀ/ ଗୋପନରେ କହିବି କିଛିତେ ।" କାନ୍ତ କବି ରହସ୍ୟମୟଙ୍କ ସହ ରାଗାନୁଗା ପ୍ରେମ ଭାବରେ ଜଡସଡ । ପ୍ରଭୁ ଚିର ଅଜ୍ଞାତ, ଚିର ରହସ୍ୟମୟ, ସେ କ'ଣ ଏତେ ସହଜରେ ଧରାଦେବେ ? ସେଥିପାଇଁ ଲୋଡା ଆତ୍ମସମର୍ପଣ । ନିରାଶ୍ରୟଟି ଜଗଦିଶଙ୍କ ଉଦ୍ଦେଶ୍ୟରେ ଦୁଇ ବାହୁ ଟେକିଦେଲେ ମିଳେ କରୁଣା, ବର୍ଷିଯାଏ ସ୍ନେହାଶୀଷ । ପତିତପାବନ ଲମ୍ବାଇ ଦିଅନ୍ତି ପ୍ରେମ ରଜ୍ଜୁ ଆପଣାର ପ୍ରିୟ ଭକ୍ତ ମାନଙ୍କ ଆଡକୁ । ଦୟା, କ୍ଷମା, ମୋକ୍ଷ, ଅପଲକେ ପ୍ରାପ୍ତ ହୁଏ । କୁରୁସଭା ତଳେ ଦ୍ରୌପଦୀ, ଘୋର ବନେ ମୃଗୁଣୀ, ଜୟବିଜୟ ଦ୍ୱାରପାଳ (ଗଜକୁମ୍ଭୀର), ଦରିଦ୍ର ସଖା ସୁଦାମା, ପାପୀ ଅଜାମିଳ- ଏମାନଙ୍କ ଦୁଃଖ ମୋଚନ ବିଭୁ କୃପାର ଏକ ଏକ ଜ୍ୱଳନ୍ତ ନମୁନା । କାନ୍ତକବି ମଧ ସଅଁପି ଦିଅନ୍ତି ଆପଣାକୁ ତାଙ୍କ ପ୍ରିୟତମଙ୍କ ନିକଟରେ, କାକୁତି ମିନତି କରି କହନ୍ତି ଜୀବନର ଗୋପନ କଥା । ଅନ୍ତିମ ସମୟ ସମୁପଗତ । ଅନ୍ତର୍ଯ୍ୟାମୀଙ୍କ ସହ ସାକ୍ଷାତ ମିଳନ ହେବ । ଏଣୁ ଆଶାବାଦୀ କବି ବିହ୍ୱଳରେ ଗାଇଛନ୍ତି. "ମୋର ସକଳ ଆନନ୍ଦ/ସକଳ ବେଦନା/ସମ୍ପିଦେବି ବୋଲି ତୁମରିଠାରେ/ ଆସ ହେ ସୁନ୍ଦର/ ଆସ ହେ ମଧୁର/ ମୋ ହୃଦ- ଆକାଶ-ରାକା-ଶଶଧର । (ଯିବି) ତୁମରି ଚରଣ କିରଣ ପରଶେ/ହରଷେ ମରଣ ସିନ୍ଧୁ ପାରେ ।" (ଆଜି ମୋ ଜୀବନ କର୍ମ ଶେଷେ)

କବି ବିଭୁ କୃପାରୁ ବଞ୍ଚିତ । ତଥାପି ଦିଗହରା ହୋଇନାହାନ୍ତି । ବିହ୍ୱଳ କବି ନିବେଦନ କରନ୍ତି, ଆଣିମାଦି ଅଷ୍ଟରନ୍ଧ୍ର ନୁହେଁ, କେବଳ ଅନୁରୋଧ ଛୋଟ କଥାଟିଏ

ପାଇଁ । ତାହା ପୁଣି ବାଇୟାଟିଏ ହେବାର ଅଭିଳାସ । ଥରକୁ ଥର ହାରିଯାଇ ତାଙ୍କ ପ୍ରିୟ ରାଇଜ ରାଜାଙ୍କୁ ବିନତି କରିଛନ୍ତି,

"ଦେ ମୋତେ ବାଇୟା କରି ଆରେ
ମୋର ବାଇୟା ରାଜା
ନାଚିବି ମୁଁ ଲଙ୍ଗଳା ହୋଇ (ତୁ) ତାଳିମାରି
ଦେଖିବୁ ମଜା ।
ଫାଟକରେ ଅଟକ ରହି ଗଲିଣି ମୁଁ
ବେଦମ ହୋଇ
ଏକା ଥରକେ ମାରିବି ଡିଆଁ
ଉଡାଇ ଦେଇ ମୁକ୍ତି-ଧ୍ୱଜା (ଦେ ମୋତେ ବାଇୟା କରି) ।" 'ଜୀବନ ସଂଗୀତ'ରେ ଏଇ ଗୀତଟି ମରମ ଭେଦୀ, କରୁଣ ରସସିକ୍ତ; ସର୍ବଶ୍ରେଷ୍ଠ ଆତ୍ମନିବେଦନ । କବି ନିଜେ ବାଇୟା ହେବା ପାଇଁ ବ୍ୟାକୁଳ । ସେ ଦୁନିଆ ମାଲିକଙ୍କୁ 'ବାଇୟା ରଜା' ମଧ୍ୟ ସମ୍ବୋଧନ କରିଛନ୍ତି । ଏହାଠାରୁ ଗଭୀର ବିଶ୍ୱାସ ବୋଧର କଥା କ'ଣ ବା ଅଧିକ ହୋଇପାରେ ? ଏଣିକି ବାଇୟା କବି ତାଳ, ମାନ ଲୟ କିଛି ମାନିବେନି । ମନଇଚ୍ଛା ନାଚିବେ, ଗାଇବେ, ଆଉ ଅଦୃଶ୍ୟ ରାଜା ଉହାଡରେ ରହି ଡିବି ଡିବି ବାଜା ବଜାଇବେ, କବିଙ୍କ ଆତ୍ମା ହେବ ଚିରମୁକ୍ତ, କାୟା ପିଞ୍ଜରାରୁ ବିଦାୟ ନେବ ।

ରହସ୍ୟମୟ ପ୍ରଭୁ ସାତକୋଷ ଅବା ସହସ୍ର ଯୋଜନ ଦୂରରେ ଥାନ୍ତୁ; ଜଳ, ସ୍ଥଳ, ଆକାଶ, ସ୍ଥାବର, ଜଙ୍ଗମ, ଯେଉଁଠି ରୁହନ୍ତୁ ନା କାହିଁକି, ଆଦର କରନ୍ତୁ ବା ନକରନ୍ତୁ କବି ତାଙ୍କୁ ଛାଡିବେନି । ରୋକ୍‌ଠୋକ୍ କହି ପକାନ୍ତି, " ଯେତିକି ଯେତିକି ଦୁଃଖ ଦେଉଥିବ, ତେତିକି କୁଣ୍ଢାଇ ଧରିବି ହେ/ ଯେତିକି ଦୂରକୁ ଘୁଞ୍ଚି ଯାଉଥିବ/ ପଛେ ପଛେ ଅନୁସରିବି ହେ ।" ସେ ପରା କବିଙ୍କ ନିଛୁଣୀରତନ, ତାଙ୍କରି ପାଦ ତଳେ ଜୀବନ ଧନ ସବୁ ସମର୍ପଣ କରିଦେବେ । କବି ହାତଟେକି ଦେଇଛନ୍ତି; "ରଖିଲେ ରଖ ନରଖିଲେ ନାହିଁ/ନାହିଁତ ଭାବନା ତିଳେ ତାହା ପାଇଁ ଛାଡିବି କି ସତେ/ ଛଡାଇଲେ ଯେତେ ପାଦତଳେ ଲୋଟିକି ମରିବି ହେ ।" ନିରାଶ୍ରୟର ଆଶ୍ରା, ଦୁଃଖୀର ସଙ୍ଗାଳି, ଅନ୍ଧର ଲଉଡି, ପଥହୁଡାର ମାର୍ଗ ଦର୍ଶକ ପରମେଶ୍ୱରଙ୍କ ନିକଟରେ କାନ୍ତକବି ଆତ୍ମସମର୍ପଣ

କରିଛନ୍ତି । ଯାତ୍ରାପଥ ଉନ୍ମୁକ୍ତ । ମାୟା, ଅହମିକା, ଅମା ଅନ୍ଧକାର ଅନ୍ତର୍ହିତ, ପ୍ରାଣପକ୍ଷୀ ଉଡିବ ମୁକ୍ତ ଆକାଶରେ, ଅସଲ ନୀଡ ସନ୍ଧାନ ମିଳିଯିବ । ତେଣିକି ନଈ, ସେପାରିର ଗହନ କଥା । ସେଇଠି ଚନ୍ଦନ ବନ, ମହମହ ଗନ୍ଧ, ପବନ ବାସ୍ନାୟିତ । ଭାସି ଆସୁଛି ମୁକ୍ତିର ଉତ୍ତୁରା ଗୀତ । ମଝିରେ ଖାଲି ବଢନ୍ତି ନଈ; ପାରିହେବାକୁ ପଡିବ ଆପଣା ଜୀବନ ନାଆଟିକୁ ଭସାଇ ଦେଇ । ନାଆ ଟଳମଳ । କେବେ ଅମାଅନ୍ଧାର ତ' କେବେ ବର୍ଷାଭିଜା ଅଣଚାଷ ? କିଏ ସେହି କାଣ୍ଡାରି ଲଗେଇ ଦେବ ଜୀବନ ତରୀକୁ ନଈ ସେ ପାରିରେ ? ସେଇ ଅଦେଖା ନାଉରିଆଙ୍କ ଉଦ୍ଦେଶ୍ୟରେ କବିଙ୍କ ବିହ୍ୱଳିତ ଗୀତ,

"ଭଙ୍ଗା ମୋର ଡଙ୍ଗା ଖଣ୍ଡିକ ଯାଉଛି ଭାସି
କେଉଁ ଅଜଣା ରାଇଜେ କିଶ ମନାସି ।
ରତରତ ହେଉଛି ବେଳ, ଦରିଆରେ ନ ଦିଶେ କୂଳ
ମିଶିଯିବ ନିଶି ଅନ୍ଧାରେ ମନ ଉଦାସୀ ।"

ବଢନ୍ତା ନଈ, ଢେଉପରେ ଢେଉ, ଦଦରା ନାଆ, ଝଲକା ଝଲକା ପାଣି ପଶୁଛି । ଏଣେ ମେଘୁଆ ରାତି, ବିଜୁଳିର ଚମକ । ଗୁରୁଗୁରୁ ଗୁରୁ ଗରଜନ । ଦୁରୁଦୁରୁ ଛାତି, ସୂରଜ ଦେବତା ଦୂର ପାହାଡ ସେପାରିରେ । ବଡ ଉଲ୍ଲସିତ ମୁହୂର୍ତ୍ତ । ଶୁଭୁଛି ଆହ୍ଲାଦିଆ ସ୍ୱର-ଲହରି । କେତେ ବାଗରେ ଇଂଗିତ ଦଉଛି ସେ । ଦୋ ଦୋ ଚିହ୍ନା ସୁର, ଭାରି ମରମଭେଦୀ । କବି ପ୍ରାଣ ଶିହରିତ, କାନ ଡେରିଛନ୍ତି; "କିଏ ସେ ଡାକୁଛି ନଈ ସେ ପାରିରେ ରହିରହି କେତେ ବାଗରେ/ ଦୋ ଦୋ ଚିହ୍ନା ସୁର ଶୁଣିଥିଲି ପରା / କେତେ ଯୁଗ ଯୁଗ ଆଗରେ ।" ସେଇ ଅହ୍ୱାନରେ କବି ପ୍ରାଣ ଚହଲି ଯାଉଛି, ଥରାଇ ଦେଉଛି ମରମ; ଉରାଳ ପରାଣ । ଏଣିକି ଅଚିହ୍ନା, ଅଦେଖାଙ୍କ ଘରେ ଘର ବସାଇବାକୁ ପଡିବ । ସେଇ ପରମ ଧାମକୁ ଯିବା ପାଇଁ ଆତ୍ମା ପ୍ରସ୍ତୁତ । ନାଉରିଆକୁ କବିଙ୍କର ନମ୍ର ନିବେଦନ "ଦେ ମୋର ତରୀଟିବାହୀ ଧୀରେ ଧୀରେ/ ଅନେକ ଜଳରାଶି ଚାଲୁ ଚାଲୁ ଦୁହେଁ ହସି/ ଅସୀମ ପଥଧରି/ଦଦରା ନଉକାରେ ।" ତତ୍ତ୍ୱ ସନ୍ଧାନୀ ମାନସିକ ଜିଜ୍ଞାସା ବୋଧର ଏହା ଅନ୍ତିମ କଥା, ଜୀବନ ପରମ ମିଳନର ଗାଥା । ସେଇ ମିଳନ ହେବ ମଧୁମୟ, ପ୍ରୀତିପ୍ରଦ, । ଭଗବତ ରସ ରସାଣିତ 'ଜୀବନ ସଙ୍ଗୀତ'ର ତାହା ହିଁ ସାର ମର୍ମ ।

'ଜୀବନ ସଙ୍ଗୀତ' ବିଶ୍ୱକବି ରବିନ୍ଦ୍ର ଠାକୁରଙ୍କ ଗୀତାଞ୍ଜଳିର ସମଧର୍ମୀ । ରହସ୍ୟବାଦ ବିଜଡିତ, ବିଭୁ-ପ୍ରୀତିର ସ୍ୱର୍ଦ୍ଧିତ ଉଚ୍ଚାରଣ 'ଗୀତାଞ୍ଜଳି' । ଏହା ସାହିତ୍ୟରେ ବିଶ୍ୱର ସର୍ବୋଚ୍ଚ 'ନୋବେଲ୍' ପୁରସ୍କାର ପ୍ରାପ୍ତ । ଏଯାବତ୍ ସେହି ହିଁ ଜଣେ ଭାରତୀୟ ଏଭଳି ଅମାପ ଯଶର ଅଧିକାରୀ । ପ୍ରଖ୍ୟାତ କବି ଡବଲ୍ୟୁ .ବି.ୟେଟସ୍ ତତ୍ତ୍ୱାନୁସନ୍ଧାନ ପୂର୍ବକ ଗୀତାଞ୍ଜଳିର ଇଂରାଜୀ ଅନୁସୃଜନ କରି ଏହି ସମ୍ମାନ ପ୍ରାପ୍ତି ପଥସୁଗମ କରି ଦେଇଥିଲେ । ମାତ୍ର କାନ୍ତକବିଙ୍କ 'ଜୀବନ ସଙ୍ଗୀତ' ବିଭିନ୍ନ ଭାଷାରେ ଅନୂଦିତ ହୋଇପାରିନାହିଁ । ପରିଣାମରେ ସାରାଜଗତ ଏହି ରସାଳ, ମଞ୍ଜୁଳ ଅମର କଳା କୃତିର ମହକ ବାରିବାରୁ ବଞ୍ଚିତ । କାନ୍ତକବି ମଧ ସମଗ୍ର ବିଶ୍ୱରେ ପରିଚିତ ହୋଇପାରି ନାହାନ୍ତି । ଅନେକ ଓଡିଆ ସାରସ୍ୱତ ସାଧକଙ୍କ ଏହା କପାଳ ଲିଖନ । ପ୍ରଯନ୍ତ, ପ୍ରୟାସ, ପରିବ୍ୟାପ୍ତ ଚେତନା ବୋଧ, ସୁସ୍ଥ ଗବେଷଣା - ଏଗୁଡିକ ଯୋଗ୍ୟ କଳାକାରଙ୍କୁ ଯଥୋଚିତ ମର୍ଯ୍ୟାଦା ପ୍ରଦାନରେ ସହାୟକ ହୋଇପାରିବ । ନଚେତ୍ ଲକ୍ଷ୍ମୀକାନ୍ତଙ୍କ ପରି ଅନେକ ରହିଯିବେ ଶ୍ମଶାନ ତୁଳସୀଟିଏ ଅବା ବଣ ମଲ୍ଲୀ ହୋଇ ।

ଜୀବନ ସଙ୍ଗୀତ ଯନ୍ତଣା, ଯାତନାର ଉତ୍ତୁରାଗୀତ । ଏଥିରେ ଆପଣାର ଅନୁଭବକୁ କାନ୍ତକବି ବଡ ମାର୍ମିକ ଭାବେ ବ୍ୟକ୍ତ କରିଛନ୍ତି । ଯେ ଦୁଃଖ ବେଦନାର ହାତୁଡି ପାହାର ନ ସହିଛି ତା' ସୃଷ୍ଟି କାଳଜୟୀ ହୋଇପାରେ ନାହିଁ । ମାଡ ଖାଇ ହାଡ ଯାହାର ଚୂନା ହୋଇଥିବ, ମାଉଁସ ପିଞ୍ଜି ପିଞ୍ଜି ହୋଇ ଯାଇଥିବ, କାଦୁଅ ମେଞ୍ଚା ମେଞ୍ଚା ହୋଇଥିବ, ସେଇ ହୋଇପାରିବ ଖାଣ୍ଟି ଲେଖକ- ଏହା କବିଙ୍କ ଉଖୁରା ନିଖରା ଅନୁଭବ; ଅନୁଶୀଳନର ସାର୍ଥକ ଅଭିବ୍ୟକ୍ତି । ଜୀବନର ଦୁଃଖଦ, ଅଶ୍ରୁଳ, ହା-ହୁତାଶମୟ ଯଜ୍ଞ ବେଦୀରୁ ଜନ୍ମ ନେଇଛି- 'ଜୀବନ ସଙ୍ଗୀତ' ରୂପକ ଯାଜ୍ଞସେନୀ । ଏହା ଶତ ପ୍ରତିଶତ ଖାଦରହିତ; ରହସ୍ୟ ବିଜଡିତ, ବିଭୁପ୍ରେମ ପ୍ରଦାୟିନୀ ନିର୍ଝରିଣୀ; ରହସ୍ୟାବୃତ୍ତ ଅଧ୍ୟାତ୍ମବାଦ । ଈଶ୍ୱର ଚିନ୍ତନ ଜୀବନ ସଙ୍ଗୀତ ଗୁଡିକର ମୁଖ୍ୟ ବିଭାବ । ପୁନଶ୍ଚ ଏଗୁଡିକର ରଚୟିତା ସ୍ୱୟଂ ଗାନ୍ଧର୍ବ ବିଦ୍ୟା ବିଶାରଦ, ଅନୁପମ ସ୍ୱରଶିଳ୍ପୀ । ଜୀବନ ସଂଗୀତ କୁ ଗୋପୀଯନ୍ତ ବା ଏକତାର ସଙ୍ଗୀତ ଯନ୍ତ ସାହାଯ୍ୟରେ ଗାନ କରି ତନ୍ମୟ ହୋଇଯାଉଥିଲେ ଲକ୍ଷ୍ମୀକାନ୍ତ । ସ୍ତମ୍ଭୀଭୂତ ହୋଇ ଯାଉଥିଲା ମର୍ମରିତ ପତ୍ର, ଖରା, ବରଷା, ପୁଣି ଫୁଲଝରା ମଧୁ ଫଗୁଣ । କାରୁଣ୍ୟରେ ବିଜଡିତ ହୋଇଯାଉଥିଲା ଶ୍ରୋତୃ ପ୍ରାଣ । ଭକ୍ତ ଚାତକ ପାଇଯାଇଥିଲେ

ଚିର ବାଞ୍ଛିତ ପହିଲି ଆଷାଢର ବିନ୍ଦୁ ବିନ୍ଦୁ ଅମୃତ ବାରି । ସରସି ଯାଉଥିଲା ରସ-ମହକ । ଭକ୍ତ ପ୍ରାଣମୋଦି ଭକ୍ତି ରସାମୃତ ହିଁ ଜୀବନ ସଙ୍ଗୀତ ।

ଜୀବନ ସଙ୍ଗୀତକୁ ଆମ୍ରସ୍ଥ କରି ଦେଲେ ବୁଝା ପଡିଯାଏ ଏହାର ମରମ କଥା । ସଙ୍ଗୀତ ରାଜ୍ୟର ମଉଡ ମଣି ଏକାଙ୍ଗ ଚକ୍ରବର୍ତ୍ତୀ, ରାଜାଧିରାଜ କାନ୍ତକବି ଯେ ସବୁଥିରୁ ବଞ୍ଚିତ, ଏହା କଣ ସତ୍ୟ ନା ପରମ କାରୁଣିକଙ୍କ ନିକଟରେ କବିଙ୍କର ଏହା ବିନୟୋକ୍ତି ? ଜୀବନ ସଙ୍ଗୀତକୁ ପାଠ କଲେ ତାହା ସହଜରେ ବାରି ହୋଇପଡେ । ବିଭୁ ପ୍ରେମ ବିହ୍ୱଳ କବି ଗାଇଛନ୍ତି,"ସଖି ହେ, ଠକାଇ ପାରିବ ନାହିଁ (ମୋତେ ଏଣିକି)/ ଠକି ଠକି ଦେଖି ଦେଖି ଗଲିଣି ଶିଖି/ ପଡିଲାଣି ତୁମ ଠକ ପଣିଆ ଜଣା/ ଆଉ ନ ହେବି କେବେ ମୁଁ ବାଟବଣା ।" ଏଣିକି ସେହି ବନ୍ଧୁ, ପ୍ରାଣ- ସଖା, ପଛରେ ଥିବେ । ଏକା ଚଳି ପଡିଲେ ଟେକି ଧରୁଥିବେ, ବଡ ଆଦରରେ ଦେଖାଇ ଦେବେ ଠିକ ଠିକଣା ।

ଜୀବନ ସଙ୍ଗୀତ କାଳ କପାଳରେ ଚିରଭାସ୍ୱର । ସତ ମଣିଷମାନେ ପଢୁଥିବେ, "ସବୁଥିରୁ ବଞ୍ଚିତ କରି କେଉଁ ଯଶବାନ ଉଡାଇବ ହେ......." । ଏଣିକି ସାହା ରାହା ମିଳିଯିବ ଚିର ବଞ୍ଚିତଙ୍କୁ । ବିଭୁ-ରସ-ମକରନ୍ଦ ପାନରେ ତୃଷିତ ପ୍ରାଣ ହେବ ତୃପ୍ତ, ଆହ୍ଲାଦିତ ।

କାନ୍ତ କୋମଳ ପଦାବଳୀ, କଳ କଲ୍ଲୋଳିତ ରସ ଚାତୁର୍ଯ୍ୟପୂର୍ଣ୍ଣ ଭାବ ଭଙ୍ଗିମାର ରସ- ଶିଳ୍ପ 'ଜୀବନ ସଂଗୀତ', ଓଡିଆ ବାଣୀ ଭଣ୍ଡାରର ଅଦ୍ୱିତୀୟ କୀର୍ତ୍ତି ନିଶ୍ଚୟ ।





କାନ୍ତକବିଙ୍କ କାନ୍ତା ଲବଙ୍ଗଲତା ଓ ଲକ୍ଷ୍ମୀକାନ୍ତ



କାନ୍ତକୁଟୀର, ଭଦ୍ରକରେ ଦୁଇପୁତ୍ର - ଗୌରଚନ୍ଦ୍ର ଓ ଶତାବ୍ଦୀ ସାଧକ ନିତ୍ୟାନନ୍ଦ



କୁଳଦେବତା ଶ୍ରୀ ଶ୍ରୀ ଗୋପୀନାଥ ଓ ରାଧାରାଣୀ



ଚୌଧୁରୀ ଭାଗବତ ପ୍ରସାଦ
ସାମନ୍ତରାୟ ମହାପାତ୍ର
(ଲକ୍ଷ୍ମୀକାନ୍ତଙ୍କ ପିତା)



ଯୌବନେ
କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର




## ଡକ୍ଟର ସର୍ବେଶ୍ୱର ସେଣ

ସା/ଡାକ - ପୁରୁଷୋତ୍ତମପୁର

ଜିଲ୍ଲା - କେନ୍ଦ୍ରାପଡା - ୭୫୪୨୨୩

ଦୂରଭାଷ - ୯୪୩୭୦୮୮୦୩୯


ଡ. ସେଣ ଏକାଧାରାରେ ଜଣେ ବିଶିଷ୍ଟ ଶିକ୍ଷାବିତ୍, ପ୍ରବୀଣଗବେଷକ, ଲବ୍ଧ ପ୍ରତିଷ୍ଠ ସ୍ତମ୍ଭକାର ଓ ଦକ୍ଷ ସମାଲୋଚକ । ତତ୍ତ୍ୱ, ତଥ୍ୟ, ବୌଦ୍ଧିକତାର ଆବରଣ ମଧ୍ୟରେ ସେ ଏକ କାବ୍ୟିକ ବାତାବରଣ ସୃଷ୍ଟି କରନ୍ତି, ତାହା ଅନନ୍ୟ; ଅସାଧାରଣ ନିଶ୍ଚୟ । ଅବିସ୍ମରଣୀୟ କାନ୍ତକବିଙ୍କ କାଳଜୟୀ ସାହିତ୍ୟ ଉପରେ ଆଧାରିତ ଡ. ସେଣଙ୍କ ଏହି ପ୍ରବନ୍ଧ ପୁସ୍ତକପ୍ରଚୁର ପାଠକୀୟ ଶ୍ରଦ୍ଧା ଲାଭ କରିବ; ଏ ବିଶ୍ୱାସ ରହିଛି ।

ଛଅଟି ପ୍ରବନ୍ଧ ପୁସ୍ତକ - 'ମୁକ୍ତି ସଂଗ୍ରାମର ଓଁକାର', 'ଓଡ଼ିଶା ଜନଜୀବନ ଓ ଔପନ୍ୟାସିକ ନିତ୍ୟାନନ୍ଦ', 'ଛାଇ ଓ ମଣିଷ', 'ମୁକ୍ତି ସଂଗ୍ରାମରେ ସ୍ରଷ୍ଟା କତିପୟ', 'ନବଧା ନିତ୍ୟାନନ୍ଦ' ପରେ 'ଅନନ୍ୟ କାନ୍ତକବି' ଡ. ସେଣଙ୍କ ପ୍ରବନ୍ଧ କାରିଗରୀର ଅନୁପମ ନିଦର୍ଶନ ।

-ପ୍ରକାଶକ